# ACHARYA HARIHAR ANNUAL
# 1982

( a souvenir )

ଏ ସଂଖ୍ୟାରେ ଲେଖିଛନ୍ତି :

ଡକ୍ଟର ହରେକୃଷ୍ଣ ମହତାବ, କାଳନ୍ଦୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶତ୍ରୁଘ୍ନ ନାଥ, ମଧୁସୂଦନ ଦାଶ, ବ୍ରଜକିଶୋର ଧଳ, ଡକ୍ଟର ଭବଗ୍ରାହୀ ମିଶ୍ର, ଶାନ୍ତିଲତା ତ୍ରିପାଠୀ, ପ୍ରଭଞ୍ଜ ମିଶ୍ର, ଜିତେନ୍ଦ୍ର ପ୍ରସାଦ ପୃଷ୍ଟି, ରମେଶ ଚନ୍ଦ୍ର ଧଳ, ଇନ୍ଦିରା ଦେବୀ, ଯଶୋବନ୍ତ ନାରାୟଣ ଧର, ବାଞ୍ଛବନ୍ଧୁ ଦାସ, ପ୍ରଫୁଲ୍ଲ କୁମାର ଦାସ

ACHARYA HARIHAR EDUCATION SOCIETY
BHUBANESWAR




ବନ୍ଧୁଗଣ, ତା ୧୨ । ୨ । ୮୨

କେତେକ ଉତ୍ସାହୀ ଯୁବକଙ୍କର ପ୍ରଗାଢ଼ ଉଦ୍ୟମ ଫଳରେ ଏହି ଅନୁଷ୍ଠାନ ଗଠନ କରାଯାଇଛି । ଆଚାର୍ଯ୍ୟ ହରିହରଙ୍କର ସ୍ମୃତି ରକ୍ଷା କରିବା ସଙ୍ଗେ ସଙ୍ଗେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଶିକ୍ଷା, ନୈତିକତା ଓ ସମାଜସେବା କ୍ଷେତ୍ରରେ ନୂତନ ଆଭିମୁଖ୍ୟ ସୃଷ୍ଟି କରିବା ଆମର ଲକ୍ଷ୍ୟ । ଏଥିପାଇଁ ଆମକୁ ବହୁପଥ ଅତିକ୍ରମ କରିବାକୁ ହେବ । ନେହେରୁଜୀଙ୍କ ଭାଷାରେ "ଯିଏ ଦେଶର ଉପଯୁକ୍ତ ସେବା କରି ପାରେ ସେ ହିଁ ପ୍ରକୃତ ନାଗରିକ" ।

ଆମର ଧାରଣା, ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଫଳରେ ହିଁ ଉତ୍ତମ ନାଗରିକ ତିଆରି କରି ଯାଇପାରିବ । ଏହି ପ୍ରଚେଷ୍ଟାରେ ଆମେ ଲାଗି ରହିବୁ । ଆଶା, ଆପଣମାନଙ୍କର ଶୁଭେଚ୍ଛା ସହଯୋଗ ଓ ସମର୍ଥନ ପାଇବୁ ।

ଆପଣଙ୍କର

ଭବଗ୍ରାହୀ ମିଶ୍ର

( ସମ୍ପାଦକ )

# News & Notes

## ACHARYA HARIHAR EDUCATION SOCIETY

( PR—589/385—1981-82 )

Acharya Harihar Education Society was formed in July 1981. Immediately after the formation of the Society, the Executive Committee decided to establish a Degree College in Arts named as "Acharya Harihar Mahavidyalaya." During the academic year 1981-82 First Year & Third Year Arts Classes were started. The Society is pleased that the State Government of Orissa has kindly allowed the Society to run the College at Unit-3 U. P. School.

On September 5th, 1981 the Mahavidyalaya was formally inaugurated by Sri Gangadhar Mahapatra, Minister of Education & Youth Services. Sri Gopinath Mohanty, Sri Madhusudan Nath, Sri Nityananda Mohapatra, Sri Bauribandhu Dash, Sri Narayan Rath, Sri Ramesh Dhall and Smt. Sudhansubala Panda spoke on the occasion, encouraging the Society in its noble endeavour.

On 2-11-81 a meeting of the Mahavidyalaya was held at the U. P. School to felicitate the Principal of the Mahavidyalaya Mrs. Shantilata Tripathy, who received "Eischman Award" from Utkal University as the Best Researcher of the year in Humanities.

The Mahavidyalaya is one of the pioneering institutions in the state, providing "Moral Instruction" in the curriculum.

The Society organised a "Poetry Competition on Acharya Harihar" amongst the School & College students of the state. Also a "Competition in Fine Arts" was held on the state-level, The winners will be awarded prizes.

The Society is now Compiling all the writings on and by Acharya Harihar Das to be published in several volumes.

Smt. Prativa MIshra and Sri Debi Prasanna Pattnaik were sponsored by the Society as participants in "Oriya Journalism Refreshers' Course" held by the Indian Institute of Mass Communication, New Delhi at OUAT during Jan. 11 23, 1982. Sri Pattnaik was selected as a participant for the Radio discussion Competition organised by IIMC and the All India Radio.

The Society has decided to start from next year a Kinder-Garten School (English Medium with emphasis on Cultural heritage of India), BICHITRA, a School for teaching Odissi dance and a "Post Graduate Center in Humanities & Social Sciences."

During the short span of our life, we have received encuragement and generous contribution from the people of the state & the country. We are thankful to the Students and Lecturers of the Mahavidyalaya who have dedicated their services on a voluntary basis. Rightfully in the spirit of Bana Vidyalaya, and as a befitting tribute to Acharya Harihar in whose name we have established this society, we will Continue to work for those who have dedicated their services for the welfare of the society.

Sd/- Prafulla Kr. Dash
Secretary

Sd/- Bhabagrahi Misra
President

# ଆଚାର୍ଯ୍ୟ ମହାଶୟ

ଡକ୍ଟର **ହରେକୃଷ୍ଣ ମହତାବ**

ଆଚାର୍ଯ୍ୟ ହରିହର ଦାସଙ୍କୁ ଆମ୍ଭେମାନେ ଆଚାର୍ଯ୍ୟ ମହାଶୟ ବୋଲି ସମ୍ବୋଧନ କରୁଁ । ଏପରି ବ୍ୟକ୍ତି ଯଦି କେହି ଥାଆନ୍ତି ଯାହାଙ୍କୁ ଦେଖି ଦେଲା ମାତ୍ରକେ ଭକ୍ତିଜାତ ହେବ, ସେ ହେଉଛନ୍ତି ଆଚାର୍ଯ୍ୟ ମହାଶୟ । ନିଷ୍କଳଙ୍କ ଚରିତ୍ର ଓ ତ୍ୟାଗର ଚରମ ସୀମାହିଁ ଥିଲା ସ୍ୱତଃ ଭକ୍ତି ଜାତ ହେବାର କାରଣ । ଅହିଂସାର ପ୍ରତିମୂର୍ତ୍ତି । ମୁଖ ମଣ୍ଡଳରେ ସ୍ନେହ ଶ୍ରଦ୍ଧା ସହାନୁଭୂତି ସଦା ସର୍ବଦା ଉଜ୍ଜ୍ୱଳ ଭାବରେ ପ୍ରକାଶିତ । ବାସ୍ତବିକ ଏପରି ବ୍ୟକ୍ତି ମୋ ଜୀବନରେ ଅନ୍ୟ କାହାରିକୁ ଦେଖି ନାହିଁ । ମହାତ୍ମା ଗାନ୍ଧିଙ୍କ ଦର୍ଶନରେ ତାଙ୍କର ବ୍ୟକ୍ତିତ୍ୱରେ ଜଣେ ଅଭିଭୂତ ହୋଇଯାଏ । କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କୁ ଦେଖିଲେ ମନ ସ୍ୱତଃ ନମ୍ର ହୋଇଯାଏ । ନିରୀହ ଶବ୍ଦ ତାଙ୍କଠାରେ ଅକ୍ଷରଶଃ ପ୍ରଯୁଜ୍ୟ । ପଣ୍ଡିତ ନୀଳକଣ୍ଠଙ୍କ ଆତ୍ମ ଜୀବନୀରେ ତାଙ୍କ ସମ୍ବନ୍ଧରେ ସାମାନ୍ୟ କିଛି ବୃତ୍ତାନ୍ତ ଦିଆ ହୋଇଛି । ମାତ୍ର ତାଙ୍କର ପୂର୍ଣ୍ଣ ଜୀବନୀ ବର୍ତ୍ତମାନ ସୁଦ୍ଧା ଲୋକ ଲୋଚନକୁ ଆସି ନାହିଁ । ଜନପ୍ରିୟତାର ପ୍ରମାଣ ମିଳେ ଯେତେବେଳେ ଲୋକେ ସ୍ୱତଃ ସ୍ୱର୍ଗତ କାହାରି ସ୍ମରଣାର୍ଥେ କିଛି କରନ୍ତି । ଭୁବନେଶ୍ୱରରେ ଆଚାର୍ଯ୍ୟ ବିହାର ନାମ କରଣ ଜନତା ଦ୍ୱାରା । ଆଚାର୍ଯ୍ୟ ଏଡ଼ୁକେଶନ ସୋସାଇଟି ଗଠିତ ହୋଇଛି ଲୋକଙ୍କ ଦ୍ୱାରା । କଟକରେ ଏକ କେନସର ଚିକିତ୍ସା କେନ୍ଦ୍ର ଆଚାର୍ଯ୍ୟଙ୍କ ନାମରେ ନାମିତ ହୋଇଛି ଲୋକଙ୍କ ଦ୍ୱାରା । ଏପରି ସମ୍ମାନ ଯେ ପାଉଛନ୍ତି ସେ ଜୀବନ କାଳରେ ଯେପରି ନମସ୍ୟ ଥିଲେ ମୃତ୍ୟୁ ପରେ ମଧ୍ୟ ସେହିପରି ନମସ୍ୟ ଅଛନ୍ତି । ଯୁବ ସମାଜ ଚିନ୍ତା କରି ଦେଖିବା ଉଚିତ କାହିଁକି ଆଚାର୍ଯ୍ୟ ମହାଶୟ ଏତେ ସମ୍ମାନର ଅଧିକାରୀ ହୋଇ ଥିଲେ । ସେ ଉଚ୍ଚ ଶିକ୍ଷିତ ବୁଦ୍ଧିଜୀବି ନ ଥିଲେ । ସେ ଧନୀ ନଥିଲେ । ବରଂ ସେ ଦରିଦ୍ରତାକୁ ଆଲିଙ୍ଗନ କରି ରହିଥିଲେ । ତଥାପି କାହିଁକି ସେ ଏତେ ସମ୍ମାନିତ, ଏ ପ୍ରଶ୍ନ ପ୍ରତ୍ୟେକ ଯୁବକ ଯୁବତୀ ନିଜକୁ ପଚାରନ୍ତୁ । ହୃଦୟରୁ ଉତ୍ତର ମିଳିବ--ନିଃସ୍ୱାର୍ଥ ପରତା ଓ ନମ୍ରତା ହିଁ ସମ୍ମାନ ପ୍ରଦାନ କରେ !

# ଆଗ୍ନେୟ ହରିହର

ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ

ଜୀବନରେ ବହୁବ୍ୟକ୍ତିଙ୍କ ସହ ସାକ୍ଷାତକାର ଘଟେ । ତାଙ୍କ ଭିତରୁ ଘରେ ବାହାରେ କିଏ ନିକଟତମ ଆଉ କିଏ ନିକଟତର । କ୍ୱଚିତ ଜଣେ ଜଣେ ଗ୍ରୁଏଁ ଗ୍ରୁଏଁ ଯେମିତି ନିକଟତମ ହୋଇ ପଡ଼ନ୍ତି । ପଛକଥା ମନେ ପକାଇଲେ ଆଶ୍ଚର୍ଯ୍ୟ ବୋଧ ହୁଏ । ଆଗ୍ନେୟ ହରିହର ସେମିତି ଏକ ଆଶ୍ଚର୍ଯ୍ୟ ।

ସେ ଆଶ୍ଚର୍ଯ୍ୟର ନିକଟତର ହେବା ଦୁଃସାଧ୍ୟ । କିନ୍ତୁ ସେ ଯେମିତି ଗ୍ରୁଏଁ ନିକଟତମ ହୁଅନ୍ତି ।

ଧନୀ ଦରିଦ୍ର ପାଠୁଆ ମୂର୍ଖ ଗ୍ରାମୀ କିଏ ହେଲେ ତାଙ୍କଠାରୁ ଦୂରରେ ରହି ପାରନ୍ତି ନାହିଁ । ଏହି ଲେଖକର ସୌଭାଗ୍ୟ ଘଟିଛି । ଆଗ୍ନେୟ ମହାଶୟଙ୍କୁ ତାଙ୍କନିଜ ଜନ୍ମ ସ୍ଥାନରୁ ଆରମ୍ଭ କରି ବିଭିନ୍ନ ସ୍ଥାନରେ ଭେଟିଛି ସମ୍ବା ଘାଟରେ ଭୂଦାନ କର୍ମଶାଳାରେ । ଶୁଣିଛି ମଧ୍ୟ ତାଙ୍କ କଥା କେତେ ମୁଖରୁ ।

ସତ୍ୟବାଦୀ ବନ ବିଦ୍ୟାଳୟର ଶିକ୍ଷକ ରୂପେ, ପୁଣି ଭୂଦାନ ଯଜ୍ଞର ପୁରୋଧା ରୂପେ ସବୁଠାରେ ସେ ଦେଖା ଦିଅନ୍ତି ସମାନ ହୋଇ । ତାଙ୍କୁ ଅସାମାନ୍ୟ ବା ଅସାଧାରଣ କହି ହେବନାହିଁ । ପୁଣି କହି ହେବନାହିଁ ମଧ୍ୟ ଅଛି କେଉଁଠି ତାଙ୍କର ତୁଳନା ଅଛି । ପିଲା, ବୁଢ଼ା, ପଣ୍ଡିତ, ମୂର୍ଖ, ଧନୀ, ଗରିବ, ଜାତି, ଅଜାତି ସାନବଡ଼ ବିଗ୍ରହ ଉର୍ଦ୍ଧ୍ୱରେ ତାଙ୍କର ସ୍ଥାନ ନିରୂପିତ । ସବୁ ମଣିଷର ସେ ଏତେ ନିକଟ ଯେ, କାହାରି ହେଲେ ଦୂରେଇ ଦେଖିବାର ସାଧ୍ୟ ନାହିଁ ।

ମହାପୁରୁଷମାନଙ୍କର କେତେ ଜୀବନ କାହାଣୀ ଆମେ ପଢ଼ୁ ଓ ଶୁଣୁ । ପତ୍ର ପତ୍ରିକା ଅଥବା ଗ୍ରନ୍ଥମାନଙ୍କରେ କେତେ ମହାପୁରୁଷଙ୍କର ଜୀବନୀ ପ୍ରକାଶିତ ହୁଏ । ଆଗ୍ନେୟ ହରିହର କିନ୍ତୁ ଏ ସବୁର ବହୁତ ଦୂରରେ ତାଙ୍କୁ ଗୋଡ଼ାଇ ଧରିବାର ସାଧ୍ୟ କାହାର ଅବା କେଉଁଠି । ଜୀବନରେ ବହୁବାର ବହୁସ୍ଥାନରେ ତାଙ୍କୁ ଭେଟିବାର ସୌଭାଗ୍ୟ ମିଳେ । ମାତ୍ର ସେ ଏତେ ଦୂରରେ ଓ ଏତେ ଉଚ୍ଚରେ ଯେ, ଅଗ୍ନେୟ ହରିହରଙ୍କ ସମ୍ପୂର୍ଣ୍ଣ ସ୍ୱରୂପ ଫୁଟାଇବାର ସାମର୍ଥ୍ୟ ଏହି ଲେଖକର ଲେଖନୀ ହରାଇ ବସିଛି, ତାଙ୍କ ପ୍ରଥମ ଦର୍ଶନ ଦିନଠାରୁ ।

କେବଳ ଆଖିରେ ଦେଖି ତାଙ୍କୁ ଯେପରି ଦୂରରୁ ନମସ୍କାର କରିଛି । ଆଜି ସେହି ସୌଭାଗ୍ୟରୁ ବଞ୍ଚିତ ହୋଇ ପ୍ରାତଃ ସ୍ମରଣୀୟ ଅଗ୍ନେୟ ମହାଶୟଙ୍କୁ ନମସ୍କାର ଜଣାଏଁ ମାତ୍ର ।



# ଜନସେବାର ପ୍ରତୀକ

## ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଆଚାର୍ଯ୍ୟ ହରିହର ଦାସ ଆମ ଓଡ଼ିଶା ଭୂମିରେ ଜନ୍ମ ଗ୍ରହଣ କରି ନ ଥିଲେ, ବୋଧହୁଏ ଭାରତର ସାଧାରଣ କର୍ମକ୍ଷେତ୍ରରେ ମଦର ଟେରେସାଙ୍କ ଅପେକ୍ଷା ଅଧିକ ଖ୍ୟାତି ଓ ପ୍ରସିଦ୍ଧି ଲାଭ କରିଥାଆନ୍ତେ । ମଦର ଟେରେସା କେବଳ ଦୁଃଖୀ ଆର୍ତ୍ତଜନର ସେବାଯୋଗୁଁ ନୋବେଲ ପୁରସ୍କାର ପ୍ରାପ୍ତ ହୋଇଛନ୍ତି ଏବଂ ସାରା ଜଗତରେ ଏକ ନିର୍ମଳ ନିଷ୍କାମ ଦୁଃଖୀଜନ ସେବକ ରୂପେ ପୂଜା ପାଉଛନ୍ତି ଏବଂ କମ୍ୟୁନିଷ୍ଟ ରାଷ୍ଟ୍ରମାନଙ୍କ ବ୍ୟତୀତ ପୃଥିବୀର ପ୍ରାୟ ପ୍ରତ୍ୟେକ ରାଷ୍ଟ୍ରରୁ ନିମନ୍ତ୍ରଣ ପାଉଛନ୍ତି ତାଙ୍କର ସେବା କେନ୍ଦ୍ର ଉକ୍ତ ରାଷ୍ଟ୍ରମାନଙ୍କରେ ପ୍ରତିଷ୍ଠା କରିବା ନିମନ୍ତେ—ନିର୍ମଳ ସେବାହିଁ ତାଙ୍କର ଧର୍ମ ଓ କର୍ତ୍ତବ୍ୟ । କିନ୍ତୁ ଆଚାର୍ଯ୍ୟ ହରିହର ଦାସଙ୍କ କାର୍ଯ୍ୟ ଓଡ଼ିଶା ଭିତରେ ସୀମାବଦ୍ଧ ହୋଇଥିଲେ ସୁଦ୍ଧା ସେ କେବଳ ସେବାଧର୍ମର ପ୍ରତୀକ ନ ଥିଲେ, ତାଙ୍କର କାର୍ଯ୍ୟ ରାଜନୀତିକ ଓ ସାମାଜିକ କ୍ଷେତ୍ରରେ ମଧ୍ୟ ତଦନୁରୂପ ଯୁଗାନ୍ତକାରୀ ଥିଲା । ତାଙ୍କର ବ୍ୟକ୍ତିଗତ ଆଚରଣ, ଜୀବନ ଓ କାର୍ଯ୍ୟରେ ଉଚ୍ଚ ମାନବିକ ମୂଲ୍ୟବୋଧ ଓ ଚରିତ୍ରବତ୍ତାର ପରିଚୟ ପ୍ରତି ପଦକ୍ଷେପରେ ପ୍ରକଟିତ ହେଉଥିଲା ।

ସେ ଥିଲେ ଆମ ଦେଶର ବ୍ରିଟିଶ ବିରୋଧ ଜନ ଆନ୍ଦୋଳନର ପ୍ରଥମ ଅସହଯୋଗୀମାନଙ୍କ ଭିତରୁ ଜଣେ । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱ ଓ ଦର୍ଶନକୁ ସେ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରିଥିଲେ । ଶିକ୍ଷକତା କରିଥିଲେ ସତ୍ୟବାଦୀ ସ୍କୁଲରେ ଏବଂ ଅନ୍ୟତ୍ର. ମାତ୍ର ପଞ୍ଚସଖାଙ୍କ ମଧ୍ୟରୁ ସେ ଥିଲେ ସଂପୂର୍ଣ୍ଣ ଭିନ୍ନ ପ୍ରକୃତିର । ରାଜନୀତି କ୍ଷେତ୍ରରେ ଉଚ୍ଚସ୍ଥାନ ପାଇଥିଲେ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହୋଇଥିଲେ; ମାତ୍ର ପ୍ରତିଦ୍ୱନ୍ଦିତା କରି ନୁହେଁ—ଅତି ଜଟିଳ ଓ ବିବାଦୀୟ ପରିସ୍ଥିତି ଭିତରେ ଆଚାର୍ଯ୍ୟ ହରିହର ନେତା ହେଉଥିଲେ ନୈତିକ ପ୍ରଭାବ ଦ୍ୱାରା କମିଟିର କାର୍ଯ୍ୟରେ ନୂତନ ପ୍ରେରଣା ଦେବା ନିମନ୍ତେ । ସମସ୍ତଙ୍କର ସ୍ନେହ ଓ ଶ୍ରଦ୍ଧା ଲାଭ କରିଥିବା ହେତୁ ଗୋଷ୍ଠୀ ବିବାଦ ସତ୍ତ୍ୱେ କଂଗ୍ରେସ କମିଟିର କାର୍ଯ୍ୟ ତାଙ୍କ ନେତୃତ୍ୱରେ ସୁପରିଚାଳିତ ହୋଇ ପାରୁଥିଲା । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ୧୯୩୦ ମସିହାରେ ବ୍ରିଟିଶ ସାମ୍ରାଜ୍ୟବାଦର ଲୋପ ନିମନ୍ତେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା । ଓଡ଼ିଶାର ଲବଣ ଆଇନ ଅମାନ୍ୟ ବାଲେଶ୍ୱର ଜିଲାର ଇଞ୍ଚୁଡ଼ିଠାରେ ଯେ କରାଯାଇଥିଲା, ତହିଁର ସେ ଥିଲେ ପ୍ରଥମ ସେନାପତି । କିଛିଦିନ ଦୈନିକ 'ସମାଜ' ପତ୍ରିକାର ସମ୍ପାଦକ ମଧ୍ୟ ହୋଇଥିଲେ ।

ମୋର ଭଲପରି ମନେ ପଡ଼ୁଛି । ୧୯୪୨ ଭାରତ ଛାଡ଼ ଓ 'କର ବା ମର' ବିପ୍ଳବ ବେଳେ ଆମେ ସବୁ ବ୍ରହ୍ମପୁର ଜେଲରେ ଥିଲୁ । ମତେ ମାତ୍ର ଅଳ୍ପଦିନ ସକାଶେ ସେଠକୁ ନିଆଯାଇଥିଲା—ପରେ ଓଡ଼ିଶା ଷଡ଼ଯନ୍ତ୍ର ମକଦମାରେ ସଂପୃକ୍ତ କରାଯାଇ ଛଅବର୍ଷ ସଶ୍ରମ କାରାଦଣ୍ଡ ମିଳିଲା ଏବଂ କଟକ ଜେଲକୁ ଅଣାଯାଇଥିଲା । ମାତ୍ର ସେହି ଅଳ୍ପକାଳ ଅବସ୍ଥାନ ଭିତରେ ଭୀଷଣ ଝଡ଼ତୋଫାନ ଘଟି ଏକ ସ୍ଥାନରେ ଜେଲ ପ୍ରାଚୀର ଭାଙ୍ଗି ପଡ଼ିଥିଲା । ମୁଁ ଏତେକାଳ ବ୍ରିଟିଶ ସରକାର ବିରୁଦ୍ଧରେ ଗୋପନରେ ରହି ଗିରଫ ନ ହୋଇ ଓଡ଼ିଶାରେ ଆନ୍ଦୋଳନ ସଙ୍ଗଠନ କରିଥିଲି ଏବଂ ଏହି ମଉକାରେ ଜେଲ ଭିତରୁ ପଳାୟନ କରିବାର ସୁଯୋଗ ନେବାଲାଗି ଉଦ୍ୟମ କରିଥିଲି । ଜଣେ ଜଣେ ଜେଲ ସାଥୀଙ୍କଠାରୁ ଖଣ୍ଡେ କୋଟ ଓ ପାଞ୍ଚଟି ଟଙ୍କା ଯୋଗାଡ଼ କରିସୁଦ୍ଧା ଭଗ୍ନ ପ୍ରାଚୀର ଭେଦ କରିବା ନିମନ୍ତେ ସକଳ ଚେଷ୍ଟା ବ୍ୟର୍ଥ ହେଲା । ଘନ ଅନ୍ଧକାର ତୋଫାନ ରାତି ପାହିଲା—ସଶସ୍ତ୍ର ପୁଲିସ ପ୍ରହରୀ ରାତି ଶେଷହେବା ପୂର୍ବରୁ ପହଞ୍ଚି ଗଲେ । ମୋର ଯିବା ନୋହିଲା । ତତ୍ପର ଦିନ ସକାଳୁ ଆଚାର୍ଯ୍ୟ ହରିହର ସ୍ନେହବୋଳା ଭାଷାରେ ଆସି କହିଲେ—"କିହୋ ! ରହିଗଲ କି ?" ବିସ୍ମିତ ହେଲି ତାଙ୍କଠାରୁ ଏଭଳି ସହାନୁଭୂତି ବାଣୀ ଶୁଣି, କାରଣ

ତାଙ୍କପରି ଅନେକ ଗାନ୍ଧୀବାଦୀ ବନ୍ଧୁ, ମୋର ଲୁଚିକରି ରହିବା ଏବଂ ଜେଲରୁ ପଳାୟନର ଉଦ୍ୟମକୁ ଆଦୌ ପସନ୍ଦ କରି ନ ଥିଲେ । ମହାତ୍ମା ଗାନ୍ଧୀ ମଧ୍ୟ ଆମେମାନେ ପୂର୍ଣ୍ଣ ଅହିଂସନୀତି ଅନୁସରଣ କରି ନ ଥିଲେ ସୁଦ୍ଧା ଆମ ମାନଙ୍କର ବୀରତ୍ୱ ଓ ସାହସିକ କାର୍ଯ୍ୟକୁ ପ୍ରଶଂସା କରି ଥିଲେ । ଆଶ୍ଚର୍ଯ୍ୟ ହରିହରଙ୍କର ମନୋଭାବ ତଦନୁରୂପ ହୋଇଥିଲା । ସେ ଚାହୁଁ ଥିଲେ ସଂଗ୍ରାମର ସଫଳତା ।

ରାଜନୀତିକ ଜୀବନର ଏପରି ସଫଳତା ସତ୍ତ୍ୱେ ସେ କେବେହେଲେ ନେତୃତ୍ୱ କିମ୍ବା ଅନ୍ୟ କୌଣସି ପଦପଦବୀ ଲାଗି ପ୍ରତିଯୋଗିତା କରି ନଥିଲେ । ଆଗ୍ରହ ବି ଦେଖାଇ ନ ଥିଲେ । ସ୍ୱାଧୀନତାପରେ ସେ ସଂପୂର୍ଣ୍ଣ ରୂପେ ରାଜନୀତିକ ସଂପର୍କ ତୁଟାଇ ଜନସେବା ଓ ରଚନାତ୍ମକ କାର୍ଯ୍ୟରେ ନିଜର ସମସ୍ତ ସମୟ ନିଯୁକ୍ତ କରିଥିଲେ । ଜୀବନର ଶେଷ ଅବସ୍ଥା ବେଳକୁ ତାଙ୍କର ଦୃଷ୍ଟି ଶକ୍ତି ହ୍ରାସ ହୋଇ ଯାଇ ଥିଲେ ସୁଦ୍ଧା ସେ କେବେହେଲେ ସେବାକାର୍ଯ୍ୟରୁ ବିରତି ନେଇ ନ ଥିଲେ ।

ସେ ଥିଲେ ଜଣେ ପରମ ପ୍ରେରଣା ଦାୟକ । ତାଙ୍କ ଆଦର୍ଶ ଓ ନିଃସ୍ୱାର୍ଥପର ଜୀବନରେ ବହୁଲୋକ ପ୍ରଭାବିତ ହୋଇଛନ୍ତି ଏବଂ ଉତ୍ସାହ ପାଇଛନ୍ତି ଏବେ ବି ତାଙ୍କ ନାମ ଭଜନ୍ତି । ସେ ଦେଖାଇ ଦେଇଥିଲେ କିପରି ମାନବିକ ମୂଲ୍ୟବୋଧ ରକ୍ଷା କରାଯାଇ ବି ରାଜନୀତିକ ଓ ଜନସେବା କାର୍ଯ୍ୟ କରାଯାଇ ପାରେ । ଅଧୁନା ରାଜନୀତିକ ଓ ସାମାଜିକ ଜୀବନ ଯେପରି କଳୁଷିତ ଓ ଯେପରି କ୍ଷିପ୍ର ଗତିରେ ନୈତିକ ଅଧୋଗତି ଘଟୁଛି, ତାହା ଦେଖିବାକୁ ଆଶ୍ଚର୍ଯ୍ୟ ହରିହର ନାହାନ୍ତି —ଏହା ତାଙ୍କପ୍ରତି ଏକ ଆଶୀର୍ବାଦ ।

୩୫୭, ଶହୀଦନଗର
ଭୁବନେଶ୍ୱର-୭୫୧୦୦୭

# ସାର୍ଥକ ସ୍ମରଣ

ଅଧ୍ୟକ୍ଷ ଶ୍ରୀ ଶତ୍ରୁଘ୍ନ ନାଥ

ପ୍ରଦର୍ଶନୀ ହେଉଥାଏ । ଏଥିରେ ଶ୍ରେଷ୍ଠ ବଡ଼ ପିଲାଙ୍କର ହାତକାମ ଥାଏ । ହାତକଟା ସୂତା, ଏହି ସୂତାରେ ବୁଣା ଲୁଗା, ପନିପରିବା, ଦରକାରୀ ଜିନିଷ ଆଦି ରଖାଯାଇଥାଏ । ପିଲାଙ୍କ ଖେଳିବାର ନାନା ଖେଳଣା ଓ ଜିନିଷପତ୍ର ପିଲେ ନିଜହାତରେ ତିଆରି କରି ରଖିଥାନ୍ତି । ପନିପରିବା ବଗିଚାରେ କଦଳୀ, ଅମୃତଭଣ୍ଡା, ବାଇଗଣ, କୋବି, ଆଳୁ, ପିଆଜ ଆଦି ବିଭିନ୍ନ ପ୍ରକାରର । ଏସବୁ ସ୍କୁଲ ବଗିଚାରେ ଆଣି ପିଲାମାନେ ସ୍କୁଲ ଅନୁସାରେ ଓ କେତେକ ସ୍ଥଳରେ ପଦାର୍ଥ ଅନୁସାରେ ସଜା ଯାଇଥାଏ । ଅନୁଗୋଳ ମୌଳିକ ଟ୍ରେନିଂ ସ୍କୁଲର ଖୋଲା କ୍ଷେତ, କଳା କଳା ଖଳାମାଟିରେ କପା ଚାଷ ହୋଇଥାଏ । ଧଳା ଧଳା ଗୋଲାପ ପରି କପା ଓହଳି ପଡ଼ୁଥାଏ । ଶ୍ରେଷ୍ଠ ଶ୍ରେଷ୍ଠ ପିଲେ କପା ତୋଳୁଥାନ୍ତି । ମୁଖରେ ହସ ଓ ପାଟିରେ ପ୍ରଶ୍ନ । ହାତରେ କାମ । କ୍ଷେତ ପାଖକୁ ଦଳେ ପିଲେ, ବଡ଼ ବଡ଼ ହେବେ, କପାରୁ ମଞ୍ଜି କାଢ଼ୁଥାନ୍ତି । ଆଉ ଟିକିଏ ବଡ଼ ପିଲା ଏହାକୁ ସୁଆଁରି ଅନ୍ୟମାନେ ଭିଣୁଥାନ୍ତି । ଭିଣା ତୁଳାକୁ ବଳଣା କରି ଯାଉଥାଏ । ଶହେ ଖଣ୍ଡେ ପିଲା ଆଡ଼େ ଧାଡ଼ିରେ ସମାନରେ ଚକା ପକାଇ ସୂତା କାଟୁଥାନ୍ତି । ସୂତାକୁ ଦୋବଟା କରି କେତୋଟି ତନ୍ତରେ ଲୁଗାବୁଣା ଚାଲିଥାଏ । ପିଲାଙ୍କ ଗହଣରେ ପାକୁଆ ପାଟିର ହସ ଫୁଟି ବାହାରୁଥାଏ । ସୂତା ମାଳକୁ ମୁହଁର ଦାଢ଼ି ଛୁଉଁଥାଏ । ଧଳା ସୂତାକୁ ଧଳା ଦାଢ଼ିର ମେଳ ହୋଇଥାଏ । ସମ୍ଭବତଃ ବେଳେ ବେଳେ ଅଡ଼ୁଆ ଦାଢ଼ି ଅଡ଼ୁଆ କରୁଥିବାରୁ ବାଁ ହାତରେ ଦାଢ଼ି ଓଟୁଁ ଦେଉଥାନ୍ତି । ଡାହାଣ ହାତଟି ପିଲାଙ୍କ କାନ୍ଧ ଉପରେ ପଡ଼ୁଥାଏ । ସେ ବୁଲି ବୁଲି ପ୍ରଦର୍ଶନୀ ଦେଖୁଥାନ୍ତି । ପିଲାଙ୍କୁ ପଚାରି ବୁଝୁଥାନ୍ତି । ସବୁଠି ଅଟକୁ ଥାନ୍ତି । ପିଲାଙ୍କ ଉତ୍ତରରେ ପେଟ ପୂରୁଥାଏ ଓ ମନଛୁଆଁ କଥା, ହସ ଓ ହାତଛୁଇଁ ସଭିଙ୍କ ପେଟ ପୂରୁ ଥାଏ । ଝିଅମାନେ ଅନ୍ୟ କାମଛଡ଼ା ମୁରୁଜ ଓ ଝୋଟି ଦେଉଥାନ୍ତି । ଉଦଘାଟକ ସେଠି ବସି ପଡ଼ି ନିଜେ ଚିତା ଦିଅନ୍ତି । ସେ ଉଦଘାଟକ ବାହାରିଆ ଲୋକ ନୁହନ୍ତି । ନିଜକୁ ସେଥି ସହିତ ମିଶାଇ ଦେଉଥାନ୍ତି । ଅମୃତଭଣ୍ଡାର ଓଜନକୁ ଦେଖି ତରିଟି ଗୁହାନ୍ତି ଓ କଖାରଟାକୁ ହାତରେ ତହିଲି କରି ପକାଇ ପିଲାଙ୍କୁ ପଚାରନ୍ତି । ଏପରି ପ୍ରଦର୍ଶନୀ ଶିକ୍ଷାର ମାଧ୍ୟମ ହେବ—ଏହାହିଁ ହେଉଛି ତତ୍ତ୍ୱ ।

ଏହି ଉଦ୍‌ଘାଟକ ହେଉଛନ୍ତି ଆଚାର୍ଯ୍ୟ ମହାଶୟ ଓ ପ୍ରଦର୍ଶନୀଟା ଅନୁଗୋଳ ମୌଳିକ ସ୍କୁଲ ସଘନ ଅଞ୍ଚଳର ପ୍ରଦର୍ଶନୀ । ସମୟ ହେବ ୧୯୫୨, ୫୩ ମସୀହା । ସବୁ କଥାରେ ଖୁସି । କେବଳ ଗୋଟିଏ କଥାରେ ଅସନ୍ତୋଷ । ଏ ପ୍ରଦର୍ଶନୀ ଗାଁ ଗାଁରେ ଗାଁକୁ ଗାଁକୁ ହୁଅନ୍ତା କି ? ଏବେ ବି ପ୍ରଦର୍ଶନୀ ହେଉଛି, କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କ କଥା ଆହୁରି ବାକୀ ରହିଛି । ପ୍ରଦର୍ଶନୀ ଗୋଟିଏଠି ଠୁଳ ହେଉଛି । ପ୍ରତି ପରିବାରର ବାଡ଼ିବଗିଚା, ପିଲାଛୁଆ, ଦେହପା, କାମଦାମ, ଗାଈଗୋରୁ, ଚାଲିଚଳଣ, ଆଚାର ବ୍ୟବହାର ଓ ଦୃଷ୍ଟିକୋଣ—ଏସବୁ ପ୍ରଦର୍ଶନୀ ପାଇଁ ସଜାଡ଼ି ରୁହନ୍ତା । ବିନିକ ପାଇଁ ବା ଉଦଘାଟକଙ୍କୁ ଦେଖାଇବା ପାଇଁ ନୁହେଁ, ସବୁଦିନିଆ ଓ ସମସ୍ତଙ୍କ ପାଇଁ ସଜାଡ଼ି ରହନ୍ତା । ସବୁ ସ୍ୱଦେଶୀ ଭାବନା । ଏହା ସ୍ୱାଭାବିକ ହୁଅନ୍ତା । ଏହାହିଁ ଥିଲା ଆଚାର୍ଯ୍ୟ ମହାଶୟଙ୍କ ବିଚାର ।

୧୯୫୫ ମସିହାରେ ଅନୁଗୋଳ ମୌଳିକ ଟ୍ରେନିଂ କଲେଜର ପ୍ରତିଷ୍ଠା କରାଗଲା । ୧୯୨୩ ମସିହାରେ ଓଡ଼ିଶାର ସର୍ବପ୍ରଥମ କଟକ ଟ୍ରେନିଂ କଲେଜ ଆଜି ଯାହାକି ରାଧାନାଥ ଟ୍ରେନିଂ କଲେଜ ନାମରେ ସୁପରିଚିତ । ୩୨ ବର୍ଷପରେ ରାଜ୍ୟର ଏହି ଦ୍ୱିତୀୟ ଟ୍ରେନିଂ କଲେଜ ଉତ୍କଳ ଜନୁଯନ୍ତ୍ରଣା ହେଉଛି । ମୌଳିକ ଶିକ୍ଷାରେ ବିଶ୍ୱବିଦ୍ୟାଳୟ ସ୍ୱୀକୃତିର ସୌଭାଗ୍ୟ ଭାରତୀୟ ସ୍ତରରେ ଏହି କଲେଜର ପ୍ରଥମ । ତେଣୁ ଏହା ଉପରେ ସମସ୍ତଙ୍କର ଦୃଷ୍ଟି ପଡ଼ିଛି । କେତେକ ନାକ ଟେକି ହସିଛନ୍ତି । "ଏସବୁ ବଡ଼ମୂନା ।

ଏଥିରୁ କିଛି ହେବନାହିଁ ।" ସମସ୍ତେ ବୃଣାଳୀ ଓ କୃଷକ ହେବେ । ପାଠ ପଢ଼ିବେ ନାହିଁ । ଆଉ କେତେକ ଏହାର ବିରାଟ ସମ୍ଭାବନାରେ ବିମୁଗ୍ଧ ହୋଇ ଢ଼େଙ୍ଗୁରା ପିଟିଛନ୍ତି "ନୂଆହେଲା, ସର୍ବୋଦୟ ସମାଜ ହେବ, ଗାନ୍ଧିଜୀଙ୍କ ସ୍ୱପ୍ନ ସତ ହେବ ।" ଏହା ଛଡ଼ା ଆଉ କେତେକ ଲୋକ ମୌଳିକ ଶିକ୍ଷାର ସମ୍ଭାବନାକୁ ଅହ୍ୱାନ ରୂପେ ଗ୍ରହଣ କରି ଏହାର ବାସ୍ତବାୟନ ପାଇଁ ମନପ୍ରାଣ ଢାଳି ଦେଇଛନ୍ତି । ସେପରି ଶ୍ରଦ୍ଧାଳୁ କର୍ମୀ ସତ୍ୟନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ଆଚାର୍ଯ୍ୟ ମହାଶୟ ଅନ୍ୟତମ । ଏପରି ଶିକ୍ଷା କେବଳ ମୁକ୍ତ ମଶାଲଧାରୀ ନ ଥିଲା, ଏହା ସ୍ୱାଧୀନ ଭାରତର ଜୀବନ ମନ୍ତ୍ର । ସେ ଦିଗରେ ଅଗଣିତ ଦେଶଭକ୍ତ ଗାନ୍ଧିଜୀଙ୍କ ପରାମର୍ଶରେ କାମ କରିଛନ୍ତି । ଅନୁଗୋଳ ଟ୍ରେନିଂ କଲେଜ ହେବା ପୂର୍ବରୁ ଆମ ରାଜ୍ୟର କିଛି ବଛା ଶିକ୍ଷକ ସେବାଗ୍ରାମରେ ଟ୍ରେନିଂ ନେଇଥାନ୍ତି । ସେମାନଙ୍କ ବସା ବାଛିରେ ନାନା ପ୍ରଶ୍ନ ପଚରାଯାଉଥାଏ । ସାଧାରଣ ଜ୍ଞାନଠାରୁ ଆରମ୍ଭ କରି ଗମ୍ଭୀର ବିଷୟଜ୍ଞାନ ବିଷୟରେ ପ୍ରଶ୍ନ ବିଶେଷଜ୍ଞମାନେ ପଚାରୁଥାନ୍ତି । ଜିଭରୁ ଶିରା ବାହାର କରି ଭିତର ବାହାର ଦେଖା ଯାଉଥାଏ । ଆଚାର୍ଯ୍ୟ ମହାଶୟ ସେଠି ବସିଥିବେ । ସବୁ ଶୁଣୁଥିବେ । ତାଙ୍କ ପାଳି ପଡ଼ିଲେ କହିବେ ଭଜନଟିଏ ପଢ଼ । ସେଥିରୁ ସେ ମଣିଷ ଚିହ୍ନନ୍ତି ଓ ସେପରି ମଣିଷ ସେବାଗ୍ରାମର ଶିକ୍ଷା ପାଇ ଓଡ଼ିଶାର ସେବାଗ୍ରାମ ନିର୍ମାଣ କରିଛନ୍ତି ।

ଅନୁଗୋଳ ଟ୍ରେନିଂ କଲେଜ ହେବା ପରେ ଆମ ଅଳି ଥାଏ, ଆଚାର୍ଯ୍ୟ ମହାଶୟ ବର୍ଷକୁ ଅନ୍ତତଃ ଥରଟିଏ ଆସିବେ । ସେ ଓଡ଼ିଶାରେ ପଦଯାତ୍ରା କରୁଥାନ୍ତି । ବାଜିରାଉତ ଛାତ୍ରବାସ ପରେ ଅନୁଗୋଳ ମୌଳିକ ତାଲିମ ଭବନର ପାଳି ପଡେ । ସବୁ ପ୍ରକାର ଆଦର ଅଭ୍ୟର୍ଥନାକୁ ଅପେକ୍ଷା ନ କରି ପିଲାଙ୍କ ମେଳରେ ଆଚାର୍ଯ୍ୟ ମହାଶୟ । ଅତିଥି ଭବନର ଆର ପାଖରେ ଉପାସନା ମନ୍ଦିର । ସେଠି ସେ ରହିବେ । ରାତି ଚାରିଟା ବେଳକୁ ଉଠି ପଡ଼ିବେ । ପାଖରେ କଂସା ବେଲ ଓ ଖଣ୍ଡେ ଲୁହା ଛାଟିଥିବ । ସେଥିରେ ସେ ଘଣ୍ଟା ବଜାନ୍ତି । ପିଲେ ହାଜର ହୁଅନ୍ତି । ପ୍ରାର୍ଥନା ଓ ପ୍ରବଚନ ଚାଲେ । ବର୍ଷକର ଓ ଜୀବନର ସବୁପରି ସେଇ ଗୋଟିଏ ସମ୍ପର୍କରେ ହୋଇଯାଏ ପିଲେ ପଚାରନ୍ତି ଓ ଚର୍ଚ୍ଚା କରନ୍ତି । ଆଚାର୍ଯ୍ୟେ ଉତ୍ତର ଦିଅନ୍ତି, ଉତ୍ତର ପାଇବାକୁ ଇଙ୍ଗିତ ଦିଅନ୍ତି । କିଛିଟା ଅନୁଭୂତି ଓ କେତେଟା ଭବିଷ୍ୟତ ପାଇଁ ଠାରି ।

ଥରେ ଛାତ୍ରାବାସର ବାରଣ୍ଡାରେ ଭୋଜନ ଚାଲିଥାଏ । ଚାରିଜଣ ଖଣ୍ଡେ ପରିବେଷଣ କାରୀଙ୍କ ଛଡ଼ା ବାକୀ ୪୪ ପିଲା ଓ ଆଚାର୍ଯ୍ୟ ମହାଶୟ ବସିଥାନ୍ତି । କଲେଜର ଗୁରୁଜୀ ଗଣ ଓ ବାଜୀରାଉତ ଛାତ୍ରାବାସରୁ ନବବାବୁଙ୍କ ସହିତ ଆଉ ଜଣେ ଦୁଇଜଣ ଭାଇ ବସିଥାନ୍ତି । କଲେଜର ବୃଣାଇ ଗୁରୁଜୀ ବିମ୍ବାଧର ବାବୁଙ୍କ ଘରୁ ଆସିଥାଏ ହଣ୍ଡିଏ କାଞ୍ଜି । ମୂଳା, ଲଉପତ୍ର ବଗଡ଼ା କାଞ୍ଜି । ଆଚାର୍ଯ୍ୟ ମହାଶୟ ଓ ନବ ବାବୁଙ୍କର ଆନନ୍ଦର ସୀମା ନାହିଁ । ଚାଲିଲା ସଢ଼କ । ପିଲେ ସବୁ ସଙ୍କୋଚ ଛାଡ଼ି ସଢ଼କାରେ ମାତି ଯାଇଥାନ୍ତି । ନବବାବୁ ନିଜ ମାଙ୍କ କାଞ୍ଜି କଥା ମନେ ପକାଇଥାନ୍ତି । ଆଚାର୍ଯ୍ୟ ମହାଶୟ ପିଲାବେଳର କାଞ୍ଜି କଥାରେ ବିଭୋର । ସମସ୍ତେ ସମରସ ହୋଇଥାନ୍ତି । ସମଭାବନା ଓ ସମତାମିକତା । ଏହା କାଞ୍ଜିର ଗୁଣ କିମ୍ବା ଆଚାର୍ଯ୍ୟ ମହାଶୟ ଓ ନବବାବୁଙ୍କ ବ୍ୟକ୍ତିତ୍ୱର ଅଭିବ୍ୟଞ୍ଜନା ଏହା ବାରିବା ବଡ଼ କଠିନ । ଉଭୟଙ୍କର ଆନନ୍ଦର ଢେଉ ଡେଇଁ ଡେଇଁ ଚାଲିଥାଏ । କମ୍ପି ଉଠୁଥାଏ ସେ ପରିସର । ସେ ମୁହୂର୍ତ୍ତ ଅନିର୍ବଚନୀୟ । ଆମ ବ୍ୟକ୍ତିଗତ ଜୀବନ, ସମୂହ ଜୀବନ ଓ ବିଶେଷକରି ଶିକ୍ଷାୟତନର ଜୀବନରେ ଏପରି ମୁହୂର୍ତ୍ତ ମିଳୁ ନାହିଁ । ମିଳିବାର ଆଶା ଦେଖାଯାଉ ନାହିଁ । କୋଟିଏ ଜୀବନ ଗୋଟିକରେ ପ୍ରକଟ ହେଉନାହିଁ ଓ ଗୋଟିକୁ କୋଟିଏ ଜୀବନରେ ଫଳେଇ ପାରୁ ନାହିଁ ।

ଏସବୁ ସଢ଼କାସଢ଼କି କମି ଆସିଲା ବେଳକୁ କଲେଜର କୃଷି ଗୁରୁଜୀ ସମ୍ବଲ ନପାଣ କହି ପକାଇଲେ, ସବୁଯାକ ଭିଣର ସନପଣିବା ଆମ କଲେଜ ବାଡ଼ର ପିଲାଙ୍କ ମିହନତର । ଆଚାର୍ଯ୍ୟ ମହାଶୟ କାଠେଇ ବୁଝିଲେ । ଗୋଟି ଗୋଟି କରି ପଚାରୁଥାନ୍ତି । ଉତ୍ପାଦନ, ବିଶେଷକରି ଶିକ୍ଷାୟତନର ଉତ୍ପାଦନ କେବଳ ଅର୍ଥନୀତିର ବିକାଶ ପାଇଁ ନୁହେଁ । ଏହାଦ୍ୱାରା ବ୍ୟକ୍ତିତ୍ୱର ବିକାଶ ଓ ସମୂହ ଜୀବନର ସୁଦୃଢ଼ ପ୍ରକାଶ । ସେଥିପାଇଁ ଶିକ୍ଷାରେ ଓ ଶିକ୍ଷା ମାଧ୍ୟମରେ ଉତ୍ପାଦନ ଓ ଏଥି ସହିତ ଉତ୍ପାଦନରେ ଓ ଉତ୍ପାଦନ ମାଧ୍ୟମରେ ଶିକ୍ଷା ଅଙ୍ଗାଙ୍ଗୀ ଜଡ଼ିତ ।

# "ଢେଙ୍କାନାଳରେ ଥରେ"

ଶ୍ରୀ ବ୍ରଜକିଶୋର ଧଳ

..... ମହାତ୍ମା ଗାନ୍ଧୀଙ୍କ ଆଶୀର୍ବାଦରୁ ଗଡ଼ଜାତ ମିଶ୍ରଣ ପରେ ପ୍ରଥମେ କଟକ ସ୍ୱରାଜ୍ୟ ଆଶ୍ରମଠାରେ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ପ୍ରଥମ ସାକ୍ଷାତ ହେଲା । ଢେଙ୍କାନାଳର ଅନ୍ୟ କେତେକ ବନ୍ଧୁଙ୍କ ସହ ମୁଁ ତାଙ୍କ ମୁହଁରୁ ଯେଉଁ କେତେ ପଦ ଅମୃତମୟ କଥା ଶୁଣିଲି ସେଥିରେ ଆଚାର୍ଯ୍ୟ ମହାଶୟଙ୍କ ପ୍ରତି ଆକୃଷ୍ଟ ହେବା ସଙ୍ଗେ ସଙ୍ଗେ ମୋ ଜୀବନରେ ଗତି ବଦଳିଗଲା ।......

ସେତେବେଳେ ଦୃଷ୍ଟିହୀନତା ଯୋଗୁଁ ଆଚାର୍ଯ୍ୟ ମହାଶୟ ଖଣ୍ଡିଏ ବାଡ଼ି ଧରି ଜଣକ କାନ୍ଧରେ ହାତ ପକାଇ ଚାଲୁଥାନ୍ତି । ମୁଁ ଶଙ୍କରପୁର ଠାରେ ପହଞ୍ଚିଲା ବେଳକୁ ଆଚାର୍ଯ୍ୟ ମହାଶୟଙ୍କ ସହିତ ତାଙ୍କ ଦଳ ଅରଟରେ ସୂତା କାଟୁଥାନ୍ତି । ଢେଙ୍କାନାଳ ଭିତରେ ଆଚାର୍ଯ୍ୟ ମହାଶୟଙ୍କୁ ଦେଖିବାର ଆଶା ମୋର ପୂର୍ଣ୍ଣ ହୋଇଥିବାରୁ ମୋର ଆନନ୍ଦର ସୀମା ନ ଥାଏ ।...... ଆଚାର୍ଯ୍ୟ ମହାଶୟଙ୍କ ନିକଟରେ ପହଞ୍ଚି ଶ୍ରଦ୍ଧା ଓ ଭକ୍ତିର ସହିତ ତାଙ୍କ ପାଦ ସ୍ପର୍ଶ କରିବାବେଳେ......ଆଚାର୍ଯ୍ୟ ମହାଶୟ ସସ୍ନେହେ ମୋର ଦୁଇହାତ ଧରି ମୋର କୁଶଳ ପ୍ରଶ୍ନ କରିଥିଲେ । ସେ ଦିନର ତାଙ୍କର ସେହି ଚୁମ୍ବକୀୟ ସ୍ପର୍ଶ ଓ ଅମୃତ ବୋଳା ବାଣୀ କେଇ ପଦ ସ୍ମରଣ କଲେ ଆଜିବି ଶରୀରରେ ରୋମାଞ୍ଚ ଓ ପୁଲକ ସୃଷ୍ଟି ହେଉଛି ।......

......ମୋତେ କହିଲେ, "ତୁମେ ଏଠାକାର ଜଣେ ଚାଷୀ ଓ ଲୋକେ ତୁମକୁ ଖୁବ୍ ଭଲ ପାନ୍ତି । ତୁମେ ତୁମ ଚାଷୀ ଭାଇଙ୍କ କଥା ନ ଶୁଣିଲେ ଆଉ କିଏ ଶୁଣିବ ?" ପୁଣି ସମସ୍ତଙ୍କୁ ଲକ୍ଷ କରି କହିଥିଲେ, "ଆପେ ଭଲ ହେଲେ ଦୁନିଆଁ ଭଲ । କାହାରି ନିନ୍ଦା ନକରି ଆପେ ଭଲ ମଣିଷ ହେବା ପାଇଁ ଚେଷ୍ଟା କର । ଦୁଃଖୀ ଦରିଦ୍ରଙ୍କୁ ଦୟାକର । ପ୍ରଭୁ ତୁମକୁ ଦୟା କରିବେ ।" ତାଙ୍କର ଏହି କେତୋଟି ପଦ କଥାରେ ନିରୀହ ଲୋକମାନେ ମନ୍ତ୍ରମୁଗ୍ଧ ପରି ତାଙ୍କ ଆଡ଼କୁ ଏକ ଲୟରେ ଚାହିଁ ବସିଥାନ୍ତି । ସେହିଦିନ ସେଇ ଦୃଶ୍ୟ ଓ ସେହି ସ୍ମୃତି ମୋ ଜୀବନରେ ଅଲିଭା ଗାର ହୋଇ ରହିଛି ଓ ରହିଥିବ ।

...ସ୍ୱର୍ଗତଃ ଆତ୍ମାପ୍ରତି ନତଜାନୁ ପୂର୍ବକ ପ୍ରଣତି ଜଣାଇ ପ୍ରାର୍ଥନା ଯେ ଦେଶର ଏ ମୋର ଦୁର୍ଦ୍ଦିନରେ ସେ ଶାସକ ବର୍ଗ ତଥା ଜନସାଧାରଣଙ୍କର ମଧ୍ୟରେ ସଦବୁଦ୍ଧି ଜାଗତ କରନ୍ତୁ ।...

( ※ ପ୍ରକଶୋନ୍ମୁଖୀ ପୁସ୍ତକ "ଆଚାର୍ଯ୍ୟ ହରିହର ସ୍ମାରକୀ" ଗ୍ରନ୍ଥରେ ଥିବା "ଢେଙ୍କାନାଳରେ ଥରେ" ପ୍ରବନ୍ଧର କିୟଦଂଶ )

# ଆଚାର୍ଯ୍ୟ ହରିହର ସ୍ମରଣେ

ଶ୍ରୀ ମଧୁସୂଦନ ଦାଶ
ଅବସର ପ୍ରାପ୍ତ ମୁଖ୍ୟ ଇଞ୍ଜିନିୟର

ରୋଗୀ ଶେଜ ପାଖେ          ବସି ଅପଲକେ
ସାରା ନିଶୀ ଯାର ପାହେ
କପୋଳେ ଯା'କର          କୋମଳ ସଂସ୍ପଲ
ନିମିଷେ ରହୁ ନ ଯାଏ;
ଆଉ ତ ସେ ଆଜି ନାଇ
ଆଂକୁଲାରେ ମଳ          ବସୃତ ମଜୁର
ନିର୍ବିକାରେ ଯେ କାଢ଼ଇ ।୧।
ଯେଉଁ ସେବାବସ୍ତ          ପ୍ରହସ୍ତି ନକଟ
ନ ପାଶ ଭରସି ପଶି,
ମୃତ୍ୟୁର ସାଉଁ          ବାହୁଡ଼ି ପଡ଼ଇ
ମୁମୂର୍ଷୁ ଉଠଇ ହସି;
ସେ ଆଜି ସେବକ ନାଇ
ରୋଗୀ ଯନ୍ତ୍ରଣାରେ          ଏବେ ହାହାକାରେ
କାହାରେ ରହିବେ ଚାହିଁ ।୨।
ଆର୍ତ୍ତ ସେବା ବ୍ରତ          ନାଥ ପ୍ରେମ ସ୍ରୋତ
ଅଣାଇଲ୍ଲ ଯେ ଦେଶରେ,
"ଆଚାର୍ଯ୍ୟ" ରୂପେ          ବଶଲେ ସୋହାଗେ
ଉତ୍କଳ ମଣି ଯା'ରେ
ଆଜି ସେ ଅଧକ୍ଷ ନାଇ,
ସଦା ସ୍ନେହଶୀଳ          ସେ ଗ୍ରୁପ ବତ୍ସଳ
ଶିକ୍ଷକ ପାଇବା କାହିଁ ? ।୩।
"ଏ ଦେଶ ଲବଣ          ଆମ ପ୍ରାପ୍ୟ ଧନ"
ଦେଇ ଯେ ହୁଙ୍କାର ରଡ଼ି,
ଇଂରେଜ ସଇନ          ସଙ୍ଗୀନେ ନ ମାନି
ଦମ୍ଭେ ଚଳିଲେ ଇଂଚୁଡ଼ି;
ସେ ବୀର ପୁଙ୍ଗବ କାହିଁ,
ସ୍ୱାର୍ଥ ବାସନା          କଲେ ବର୍ଜନ
ଯେହୁ ଦେଶ ହିତ ପାଇଁ ।୪।
ମାରେଛି ଅପରେ          କଅଁଳ କଥାରେ
"ଭଲ ମଣିଷ ହୁଅ",
ଢାଳଇ ଆଶୀଷ          ଦେଇ ଯେ ଉଲ୍ଲାସେ
ଅନ୍ତର ଭରା ସ୍ନେହ
ଆଜି ସେ ମଣିଷ କାହିଁ,
ପଣ କଲେ ବଂଶ          ଚସ୍ତସେ 'ମଣିଷ
ପଣ ଯେ ବଞ୍ଚିବା' ପାଇଁ ।୫।
ଯେଉଁ ଜୀର୍ଣ୍ଣ ଶୀର୍ଣ୍ଣ          ଦୁଇଟି ଚରଣ
ସାରା ଓଡ଼ିଶାର ମାଟି,
ମାଡ଼ି ଗୃଲଗଲେ          'ପଦ ଯାତ୍ରାରେ'
ସର୍ବୋଦୟ ମନ୍ତ୍ର ବାଂଟି,
ଆଜି ସେ ଚରଣ ନାହିଁ,
ସ୍ୱଏଁ ଯାହା ଚଳେ          ସେପରି ବଡ଼ ହେଲେ
ମଥା ତ ପଡ଼ଇ ନଇଁ
ପୁଣ୍ୟ ସତ୍ୟବାଦୀ          ବକୁଳ ବନରେ
ବୀର ପଞ୍ଚସଖା ମିଳି,
କେ ସୌଭାଗ୍ୟ ସୂତ୍ରେ          ବଶଲେ ଉଜ୍ଜଳେ
ଝିବ କି ଏବେ ମଉଳି;
ଆଜି ଯେ ସେ ଋଷି ନାହିଁ,
ଢ଼ ଲୁଚୁଁ ପ୍ରଣତ          ହେ ଆଦର୍ଶ ପଥ
ତବ ନୀତ ଗୀତ ଗାଇ ।୬।

# Social Sciences and the Political Process

Dr. Bhabagrahi Misra

To deal with the varieties of social problems on the implementational level, the knowledge of social science findings would be necessary in all societies irrespective of their ideological commitments. But it is usually observed that any report on social problem becomes an object of political controversy, unless the report is based on and guided by the interdisciplinary approach of the social sciences.

Social workers and the social scientists believe in the process of social change. Any innovative idea whether arising from the knowledge of social sciences or from any other source threatens the status quo and as such the power base of the political parties. If the leaders do not prepare themselve in accomodating the social science knowledge or are not interested in saving the political position held, atleast in the sphere of transfering knowledge into action, there is every likelihood that the leaders and their power base get threatened. It is again a conventional pattern that different vested-interest-groups in the political parties compete with each other in the political arena often neglecting or ignoring the scientific solution of social problems, arrived at by social scientists. The approval or disapproval of any report for implementation, necessarily becomes a political issue.

The aim of interdisciplinary social sciences is to seek scientific knowledge and provide scientific understanding. The social scientists do not determine the values or the political will of the parties concerned. They are interested in improvement of social conditions and in augmenting new programmes which will accelerate social change and efficient management of social condition. Naturally the interest of social scientists may clash with the values of political leaders. When the knowledge gained from social sciences challenges the "stereotyped" value system of the political leaders, political controversy will definitely arise. It is an implicit premise of social change and the political process.

●

# ଗୁରୁପଦର ଗୌରବ

ଶ୍ରୀମତୀ ଶାନ୍ତିଲତା ତ୍ରିପାଠୀ
ଅଧ୍ୟକ୍ଷା

ଇନ୍ଦ୍ରଧାମରୁ ବିଦାୟ ନେବାର ଗୋଟିଏ ଦଶନ୍ଧି ବିତିଗଲେ ମଧ୍ୟ କୋଟିଏ ଯୁଗର ଐତିହ୍ୟକୁ ସତେ ଯେପରି ଧରି ରଖିଛୁ ସେହି ଶ୍ମଶ୍ରୁଳ ବଦନର ପ୍ରତିଛବି। ସେହି କ୍ଷୀଣ ଅବୟବ ଏବଂ ବିନମ୍ର ସହାସ୍ୟ ବଦନରୁ ଅକଳନ ଆଶୀର୍ବାଦ ଝରିପଡ଼େ—"ଭଲ ମଣିଷ ହୁଅ", ଏହା ହିଁ ତାଙ୍କର ପ୍ରତ୍ୟେକ ବ୍ୟକ୍ତି ପ୍ରତି ଚିରନ୍ତନ ଉପଦେଶ, ଏ ଉପଦେଶର ଅନ୍ତରାଳରେ ଥିଲା ଏକ ସୁପ୍ରତିଷ୍ଠିତ ବ୍ୟକ୍ତିତ୍ୱ, ଯାହାକି ଗୁରୁ ପଦର ଗୌରବର ଚରମ ସୋପାନରେ ତାଙ୍କୁ ଅଧିଷ୍ଠିତ କରାଇଥିଲା। ସେ ହେଉଛନ୍ତି ଆଚାର୍ଯ୍ୟ ହରିହର। ବ୍ୟକ୍ତିତ୍ୱର ପୁନର୍ନିର୍ମାଣ କରିବା ହିଁ ଥିଲା ତାଙ୍କର ଏକାନ୍ତ କର୍ତ୍ତବ୍ୟ। ତାଙ୍କର ଆଦର୍ଶର ସ୍ମୃତି ଚେତାଇ ଦିଏ ପ୍ରକୃତ ଗୁରୁର କର୍ତ୍ତବ୍ୟ କରିବାରେ।

ଗୁରୁ କିଏ ? ଯାହାଙ୍କର ସୁଶିକ୍ଷାରେ ଶିଶୁ ଏକ ପୂର୍ଣ୍ଣ ମାନବିକତାର ରୂପ ଲାଭକରେ ? ବେଦର ଅମୃତ ବାଣୀରୁ ଏହା ପ୍ରତିପାଦିତ ହୁଏ—"ମାତୃମାନ୍ ପିତୃମାନା-ଚାର୍ଯ୍ୟବାନ୍ ପୁରୁଷୋବେଦ", ମାତା, ପିତା ଓ ଆଚାର୍ଯ୍ୟଙ୍କର ଶିକ୍ଷାର ସହାୟତାରେ ଏକ ସଂପୂର୍ଣ୍ଣ ମନୁଷ୍ୟ ଗଢିଉଠେ। ମାତା ହିଁ ସନ୍ତାନର ପ୍ରଥମ ଗୁରୁ. ପିତା ଦ୍ୱିତୀୟ ଓ ବିଦ୍ୟାଳୟର ଶିକ୍ଷକ ତୃତୀୟ ଗୁରୁ। ଯେଉଁ ଶିଶୁର ମାତା, ପିତା ଓ ଶିକ୍ଷକ ବିଦ୍ୱାନ୍. ଧାର୍ମିକ, ସଦାଚାରୀ ଏବଂ ତାହାକୁ ସୁଶିକ୍ଷା ପ୍ରଦାନ କରନ୍ତି, ସେ ହିଁ ମାତୃମାନ୍, ପିତୃମାନ୍ ଓ ଆଚାର୍ଯ୍ୟବାନ୍। ସେହି ଗୃହ, ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପ୍ରକୃତ ଜ୍ଞାନର ପୀଠ ଓ ପବିତ୍ର ସ୍ଥଳ। ମହାତ୍ମା ଗାନ୍ଧୀଙ୍କ ମତରେ—"ଏକ ସୁରୁଚିସମ୍ପନ୍ନ ଗୃହ ପରି ଭଲ ବିଦ୍ୟାଳୟ ଆଉ କେଉଁଠି ନାହିଁ ଏବଂ ସଦ୍‌ଗୁଣସମ୍ପନ୍ନ ସାଧୁ ପିତା ମାତାଙ୍କ ଭଳି ଆଉ କେହି ଭଲ ଶିକ୍ଷକ ହୋଇ ପାରିବେ ନାହିଁ।" ସୁସଂସ୍କୃତ ଗୃହରୁ ସଂସ୍କାରବାନ୍ ସନ୍ତାନ ଉତ୍ପନ୍ନ ହୁଅନ୍ତି ଏବଂ ସେହିମାନେହିଁ ସମାଜର ସବୁ କ୍ଷେତ୍ରରେ ଯୋଗ୍ୟତା ହାସଲ କରନ୍ତି। ଗୃହ ଯଦି ବିଶୃଙ୍ଖଳିତ ଓ ଭ୍ରଷ୍ଟ ହୁଏ, ସମଗ୍ର ସମାଜ, ରାଷ୍ଟ୍ର ଓ ବିଶ୍ୱ ମଧ୍ୟ ବିଶୃଙ୍ଖଳା ଓ ଭ୍ରଷ୍ଟାଚାରରେ ପରିପୂର୍ଣ୍ଣ ହୋଇଯାଏ, ଯେଉଁ ଗୃହରେ ମାତା ଅଶିକ୍ଷିତା, କଟୁଭାଷିଣୀ ଓ ବିଳାସ ପ୍ରିୟା, ପିତା କ୍ରୋଧୀ ଓ ଅବିବେକୀ, ସେଠାରେ ସନ୍ତାନମାନେ ଅବଜ୍ଞାକାରୀ ହୁଅନ୍ତି। ମାତା ସନ୍ତାନର ପ୍ରଥମ ଶିକ୍ଷୟିତ୍ରୀ। ଶିଶୁ ମାତୃଗର୍ଭରେ ରହିବା ଦିନଠାରୁ ତାହାର ବ୍ୟକ୍ତିତ୍ୱର ବିକାଶ ନିମିତ୍ତ ଶିକ୍ଷା ଗ୍ରହଣ କରିଥାଏ। ପିତା ମାତାଙ୍କର ଭାବନା, ଆଚରଣ ଓ କର୍ମ ଶିଶୁ ନିକଟରେ ଆଦର୍ଶ। ତେଣୁ ପ୍ରତ୍ୟେକ ପିତାମାତାଙ୍କର ଜୀବନ ସରଳ, ନିରାଡ଼ମ୍ବର, ନିର୍ଲୋଭ ଓ କର୍ମ ନିଃସ୍ୱାର୍ଥପର ହେବା ଉଚିତ। ସ୍ନେହମୟୀ ଜନନୀର ବାତ୍ସଲ୍ୟ ମମତାରେ ଶିଶୁ ଯେଉଁ ଶିକ୍ଷା ଲାଭକରେ ତାହା ଜୀବନରେ ଅଲିଭାରେଖା ପରି ଅଙ୍କିତ ହୋଇ ରହିଯାଏ। ପିତାଙ୍କର ମମତା ଭରା ଶାସନରେ ସେ ସୁଗୁଣ ସମ୍ପନ୍ନ ହୁଏ। ଶିଶୁ ପରିବାର, ସମାଜ ଓ ରାଷ୍ଟ୍ରର ଭବିଷ୍ୟମାନ ନେତା। ଗୃହରେ ସେ ଜନ୍ମଲାଭ କରି, ପାଳିତ ପୋଷିତ ହୁଏ ଓ ସମସ୍ତ ବ୍ୟବହାର ଗୃହରୁ ଶିକ୍ଷା କରେ। ଗୃହରେ ଶିଶୁର ଯେଉଁ ସଂସ୍କାର ହୋଇଥାଏ, ତାହା ଉପରେ ତାହାର ଜୀବନର ବିକାଶ

ଦୃଢ଼ୀଭୂତ ହୁଏ, ତେଣୁ ଆଦର୍ଶ ଗୃହ ହିଁ ଆଦର୍ଶ ଶିକ୍ଷାଳୟ, ତାହାହିଁ ମନୁଷ୍ୟର ଶ୍ରେଷ୍ଠ ମନ୍ଦିର ।

ପିତାମାତାଙ୍କ ସଦୃଶ ବିଦ୍ୟାଳୟର ଶିକ୍ଷକଙ୍କର ଛାତ୍ରର ଚରିତ୍ର ଗଠନରେ ଗୁରୁଦାୟିତ୍ୱ ରହିଛି । ଗୃହର ସ୍ନେହମୟ ପରିବେଶ ମଧ୍ୟରୁ ଶିଶୁ ବାହାରି ବିଦ୍ୟାଳୟରେ ପ୍ରବେଶ କରେ । ବିଦ୍ୟାଳୟର ପରିସର ଏପରି ଆକର୍ଷଣୀୟ ଓ ଶିକ୍ଷକଙ୍କର ବ୍ୟବହାର ଏପରି ସ୍ନେହ ମମତାରେ ପୂର୍ଣ୍ଣ ହେବା ଉଚିତ ଯଦ୍ୱାରା କି ଶିଶୁ ଗୃହ ଅପେକ୍ଷା ବିଦ୍ୟାଳୟକୁ ଅଧିକ ଆଦର କରି ପାରିବ । ତେଣୁ ଜ୍ଞାନ ଅର୍ଜନର ସ୍ପୃହା ତାଠାରେ ଅଧିକ ପରିଲକ୍ଷିତ ହେବ । କେବଳ ଯେ ବିଶ୍ୱ ବିଦ୍ୟାଳୟ ଉପାଧି ଧାରଣ କରିଥିବା ଯେ କୌଣସି ବ୍ୟକ୍ତି ଅଧ୍ୟାପନା କ୍ଷେତ୍ରରେ ଭାର ଗ୍ରହଣ କରିବେ ତାହା ନୁହେଁ, ସେମାନଙ୍କର ସ୍ୱଭାବ, ଆଚରଣ ଓ ଜୀବନଯାପନ ପ୍ରଣାଳୀ ଆଦର୍ଶସ୍ଥାନୀୟ ହେବା ଉଚିତ । ପିତାମାତାଙ୍କ ପରି ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ଶିକ୍ଷକ ପବିତ୍ର, ଚରିତ୍ରଶୀଳ, ସଂଯମୀ, ଜ୍ଞାନବାନ୍, ସରଳ, ନମ୍ର ଓ ସ୍ନେହଶୀଳ ହେବା ଆବଶ୍ୟକ । ତାଙ୍କର ସମସ୍ତ କାର୍ଯ୍ୟ କଳାପ ଛାତ୍ରର ଅନୁକରଣୀୟ । ଉତ୍ତମ ଗୁଣଯୁକ୍ତ ଶିକ୍ଷକ ନିଜର ସ୍ନେହ ଓ ପ୍ରେମଭାବ ଦ୍ୱାରା ବିଦ୍ୟାର୍ଥୀକୁ ବିମୁଗ୍ଧ କରି ରଖେ । ଶିକ୍ଷକଙ୍କର ଅନ୍ତଃକରଣ ଯେତିକି କୋମଳ ବାହ୍ୟକରଣ ସେତିକି ପ୍ରଭାବଶାଳୀ ହେବା ଆବଶ୍ୟକ । ଉପରେ ଶାସନର ଭୟ ଦେଖାଇ ଅନ୍ତରରେ ସ୍ନେହ କରିବା ଦ୍ୱାରା ଛାତ୍ର ଛାତ୍ରୀମାନେ ଅଧିକ ଶୃଙ୍ଖଳିତ ହୋଇ ଥାଆନ୍ତି । ରାଷ୍ଟ୍ରର ଭାବୀ ନାଗରିକ ମାନଙ୍କର ଜୀବନ ନିର୍ମାତା ହିସାବରେ ଶିକ୍ଷକ ମାନଙ୍କର ଦାୟିତ୍ୱ ଅତି ମହାନ୍ । ପ୍ରତ୍ୟେକ ଶିକ୍ଷକ ସ୍ୱରାଷ୍ଟ୍ରୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ବିଦ୍ୟାର୍ଥୀର ପ୍ରାଣରେ ଦେଶ ପ୍ରେମଭାବ ଜାଗରଣ କରାଇ ଦେଶର କଲ୍ୟାଣ ସାଧନ କରିବାରେ ପ୍ରବର୍ତ୍ତାଇବା ଆବଶ୍ୟକ । ଅଧ୍ୟାପନା ମାଧ୍ୟମରେ ଆଚାର୍ଯ୍ୟମାନଙ୍କର ଏକମାତ୍ର କର୍ତ୍ତବ୍ୟ ହେଉଛି ଛାତ୍ର ଛାତ୍ରୀମାନଙ୍କର ଜୀବନକୁ ଜ୍ୟୋତିଷ୍ମାନ୍ କରି ସେମାନଙ୍କର ଚରିତ୍ରକୁ ପବିତ୍ର, ଭାବନାକୁ ବିଶୁଦ୍ଧ, ଆତ୍ମାକୁ ପ୍ରବୁଦ୍ଧ, ହୃଦୟକୁ ପ୍ରକାଶିତ, ମସ୍ତିଷ୍କକୁ ଜ୍ଞାନଯୁକ୍ତ ଓ ସମୁନ୍ନତ କରାଇବା । ଆଚାର୍ଯ୍ୟ ଯେଉଁ ବିଦ୍ୟା ଦାନ କରନ୍ତି, ତାହା କେବଳ ବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟ ପାଇଁ ଉଦ୍ଦିଷ୍ଟ ନୁହେଁ, ତାହା ଦ୍ୱାରା ସମଗ୍ର ମାନବ ଜାତିର ସୁଖ ଓ ସୌଭାଗ୍ୟ ବୃଦ୍ଧି ପାଇଥାଏ । ତେଣୁ ଗୁରୁପଦର ଗୌରବରେ ଅଧିଷ୍ଠିତ ପିତା, ମାତା, ଓ ଆଚାର୍ଯ୍ୟ ସମସ୍ତଙ୍କ ନିକଟରେ ଚିର ନମସ୍ୟ ।

●

# ତୁମେ ସତ୍ୟମେବ

ଶ୍ରୀ ଜିତେନ୍ଦ୍ର ପ୍ରସାଦ ପୃଷ୍ଟି
ଅଧ୍ୟାପକ

ତୁମେ ଆହେ ଜନ୍ମେଜୟ ; ହେ ! ଅନନ୍ତ
ଶକ୍ତିଧର ସୃଜିଅଛ ଶାନ୍ତି, ମୈତ୍ରୀ
ବିଜୟର ଦପ୍ତି ମନ୍ତ୍ର ଉଗ୍ର ॥

ତୁମେ ନୁହଁ କ୍ଲୀବ, କ୍ଲିଷ୍ଟ, ପରାଜିତ, ଭୀରୁ
କାପୁରୁଷ, ତୁମେ ଅଟ ଅରୂପ, ଅଦେହ
ପୁଣି ଅବନାଶୀ ବୀର ଧନଞ୍ଜୟ ॥

ତୁମେ ମୋର ପୂଜାଫୁଲ, ଏ ମାଟିର ଅମୃତ ସନ୍ତାନ
ଛିନ୍ନ ଇତିହାସ ପୃଷ୍ଠା ଭଗ୍ନ ଦେହେ ହରୁଅଛୁ
ତୁମ ସ୍ମୃତ ଆଲିଙ୍ଗନ ॥

ତୁମେ ସତ୍ୟ, ତୁମେ ଧର୍ମ, ଆଉ ତୁମେ ଚରନ୍ତନ
ମହାକାଳ ଲେଟିଯାଏ ପାଦତଳେ ପାଇ ତୁମ
ମଧୁମୟ ଶାଶ୍ୱତ ଇଂଗିତ ॥

ନିସ୍ତବ୍ଧ ପୃଥିବୀ ଆଜି ଶୋକେ ମର୍ମାହତ
ପ୍ରକୃତିର ସ୍ୱର୍ଣ୍ଣ ପିଂଜୁଡ଼ରେ ଶାନ୍ତିର କପୋତ
ଆର୍ଦ୍ର କଣ୍ଠେ ଗୁମୁର କାନ୍ଦୁଛି
ପାଇବାକୁ ତୁମ ଦରଶନ ॥

ଆସନ୍ନ ବସନ୍ତର ମଳୟ ମୟୂଖେ
ଶ୍ୟାମ ଘେରା ବନାନୀର ସ୍ୱପ୍ନିଳ ଅଂଗନେ
ଶୁଭୁଅଛି ତୁମ ଧ୍ୱନି ପ୍ରତିଧ୍ୱନି ॥
ଆଉ ଶୁଭୁ ଅଛୁ ପ୍ରେମର ସେ ନିତ୍ୟ ମନ୍ଦାକିନୀ ॥
ମୋ ମନର ଦଗ୍ଧ ଫୁଲବନେ, ଭରିଦିଅ
ଉଦ୍ଦାମ ସଂଗୀତ, ସୃଷ୍ଟି କର ସତ୍ୟ, ଧର୍ମ, ପ୍ରେମ, ନ୍ୟାୟ
ମୁଁ ତୁମକୁ ଅରଚନା କରେ ॥

# ଆଶ୍ଚର୍ଯ୍ୟ ହରିହର

ଶ୍ରୀ ରମେଶ ଚନ୍ଦ୍ର ଧଳ

ହାତରେ ବାଉଁଶ ବାଡ଼ି ଧୀର ପଦେ ଯାଏ ଯେଉଁ ଜନ,
ନାହିଁ ଶୋକ ନାହିଁଟି ଶୋଚନା ମୁଖେ ଖାଲି ଆଲେକର ଗାନ,
ମଳିନ ହୋଇନି ମୁଖ, ହିସାବ ନିକାଶେ ହଜିଗଲା ଯେ ସଂପଦ,
ଅବା ଅନେକ ଉଜ୍ଜ୍ୱଳ, ଅକସ୍ମାତ ମିଳିବାରୁ କିଛୁ, ବଳ୍କଳ ବସନର—
ଶେଷ ସାଥୀ ହରିହର, ମୁହଁରେ ଯା ରୂପାସୂତା ଦାଢ଼ି,
ସବୁ ନାଚଯାଏ, ସବୁ ସତ,
ସବୁ କଥା ଏ ମନର କଳାପଟା ପିଠିରେ ଚହଟୁଛି ।
ଆଶ୍ଚର୍ଯ୍ୟ ଚାଲିଗଲେ ଚୁପ ଚାପ କାଶ୍ମୀର ଗଙ୍ଗନେଇ
ବସଂତ ସକାଳେ, ଜନପଦେ ଛୁଟିଲି ଅନେକ ପାଦ,
ସ୍ତବ୍ଧ ହେଲା ଭୂଦାନ ଅଫିସ ।
ଅନେକ ପୋଛିଲେ ଆଖି, ସବୁ ଫୁଲ ମଉଳିଲା,
ମଉଳିଲା ମୋ ମନର ମହୁଫେଣା ।
କିଏ ବା କହିଲା ଅବସାନହେଲା ଏକ ଯୁଗ, ଆମେ ହେଲୁ ପିତୃହରା,
ଅନେକ ନାବିକ ଆମେ ହରାଇଲୁ ଧ୍ରୁବତାରା
ଅନ୍ଧାର କପା ଗନ୍ତବ୍ୟ ପଥରେ ।
ଆକାଶରେ ପଟାଳି ପଟାଳି ମେଘ, କଅଁଳା ବାଛୁରୀ ଗଡ଼ ଶୋଭାଯାତ୍ରା—
କିନ୍ତୁ ସଶସମ ଆଗକୁ ବଢ଼ିଲି ମୋ ଜୀବନର ଶ୍ରେଷ୍ଠ ଶିକ୍ଷାଗୁରୁ
ଅନେକଙ୍କ ଆପଣାର
'ହରିଆ ଭାଇନା' ସ୍ତବ୍ଧ କଣ୍ଠେ କିଏ ଯେ କହିଲା,
ସେ ବେଳର କଡ଼ି ଦୁଇକୂଳ ନଈ ଖାଉଥିଲା,
ନିର୍ମମ ଆକାଶ ପୁଣି ଅମାନିଆ ମେଘ,
ଯାହାଥିଲା ସବୁଶେଷ, ଦାନ୍ତ ଅବା ଦକ୍ଷିଣ କାହିଁକି ?
ପିଲାଗୁଡ଼ା ଉହାଳ ବିକଳ, ନିଜକଥା ପଗ୍ରୁଛନ୍ତି କିଏ ?
ଏଇ ବେଳେ ହରିହର ପଛରୁ କହିଲେ-ଯାଅ, ତୁମେ ଦାନ୍ତଘଷ .....
ନିଅ ଏ ତଣ୍ଡୁଳ ନିଅ, ଏଇ ଚୂଡ଼ା କିଛି, ତୁମ ପାଇଁ
ଆଣିଛି ମୁଁ ସଙ୍ଗେ,
ସିଏ ଆଜି ଚାଲିଗଲେ, ନଗୁଡ଼ିଆ ସବୁ, ଅତି ଅସହାୟ ଲାଗେ ।
ବଡ଼ଦାଣ୍ଡ ଶାନ୍ତହେଲା, ହେଲା ଶାନ୍ତ ତୀର୍ଥର ଜନତା
ଢେଉ ସମୁଦ୍ରର,
ସେ ଦେଖାଇଲା ହରପଦ ଚିହ୍ନ ଯାହାକିଛି ରହିଯାଇଥିଲା ବାଲୁକା ପ୍ରାନ୍ତରେ ।

ଝାଉଁବଣ ସ୍ତବ୍ଧ ହେଲା, ସ୍ତବ୍ଧ ଦ୍ରୁତ ପଥଗ୍ରସ୍ତ,
ଆକାଶର ଧୂମନ୍ତ ବିହଙ୍ଗ,
ବଡ଼ଦାଣ୍ଡ ନାଲିଧୂଳି ବାଳପି ଉଠିଲା ସେବକ ସେ ଚାଲିଗଲା, ଅଗ୍ରନକେ ଆଜି
କାନ୍ଧେ ଯିଏ ନେଇଥିଲା ବୋହି 'ସ୍ୱର୍ଗଦ୍ୱାରେ' ସେମାନଙ୍କୁ
ଯେଉଁମାନେ ବୁଜିଥିଲେ ଆଖି ଅବେଳରେ,
ଅସହାୟ ପକ୍ଷୀର ଡେଣାରୁ ଖସି ପଡ଼ିଥିବା ଶେଷ ପରଟିପରି,
ହାଇଜା ଓ ବସନ୍ତ ଶିକାରେ, ନୀଳାଚଳେ ମେଳା ଆଉ ମହୋଚ୍ଛବେ,
ମେଳଣ ଭିତରେ ଆସିଥିଲେ ଜନ୍ମମାଟି ଛୁଡ଼ିଦଅଁ ଦର୍ଶନରେ ।
ଛୁରିଅନା ବକୁଳ ବନରେ ମଣିଷର ଭିଡ଼……ସେ ଚିତା ଉଠିଲା ଜଳି
ଜଳିଥିଲା ଯିଏ ଦିନେ ଗୋପବନ୍ଧୁ ପାଇଁ ଜାଳିବାକୁ ତାର ମାଂସହାଡ଼
କାହାକଥା ମାନିଲା ସେ ନାହିଁ,
ସେ ଜଳିଉଠିଲା ଅସହାୟ ଅଗଣିତ ଆଖି
ଅନେକ ସତ୍ୟବାଦୀ ଗ୍ରୁସଙ୍କର ଶେଷ ଆବେଦନ,
ମହାଶୟ ତୁମେ ଆସ ଫେରି,
ଆମେ ଆଜି ଅଛୁ ପଢ଼ିବାକୁ ତୁମଠାରୁ ଯେତେ ସବୁ ପାଠ ପଢ଼ା ଅଛି ବାକି
ହେଲା ସବୁ ବ୍ୟର୍ଥ, ଫେରିଲେନି କେହି ।
ବକୁଳ ବନର ପଦେ ପଦେ ଖାଲି ଶୁଣାଗଲା
ରାମନାମ ସତ୍ୟ ହେ, ସତ୍ୟ ଖାଲି ଏଇ ଗୋପୀନାଥ ।
ଶେଷପର୍ବ ସାଂଗ ହେଲା ଗୋଟିଏ ଜନ୍ମର ।
ଗ୍ରୁସକୁଳ ଝୁରିହେଲା ପ୍ରିୟ ତାର ଶିକ୍ଷକର ପାଇଁ ଆଉ ଯେ ଫେରିବ ନାହିଁ ।
ଅବା ସହକର୍ମୀ କେହି ଚିନ୍ତା ହେଲା ଚାଲିବ ଏ ଭୂଦାନ କିପରି ?
ସତେ କ'ଣ ଏ ଜନତା ଆସ୍ଥାବାନ ହେବ ସିଏ ହରିହର ପରେ
ସବୁ ଝଡ଼ଝଞ୍ଜା ସହିକ ପାରିବ ଦୁର୍ବାଦଳ ସମ……ଏବେ କ୍ୱାଚିତ
ହେଲା ଅନ୍ତିମ ଆଲୋକ, ଟିପାଶବ୍ଦ ଶୁଣାଯାଏ
ଧେନୁପଲ ଫେରୁଛନ୍ତି ଘରେ ।
ମୁଁ ଖୋଜିଲି ସେହି ଚଦରପକା ବାଉଁଶ ବାଡ଼ି ଧରା ସାଧୁ ପୁରୁଷଟିକୁ
ଯାହାକୁ ଶୋଭାଯାତ୍ରାର ଅଗ୍ରଭାଗରେ ରଖି ଆମେ ନାଚୁଥିଲୁ,
ଯିଏ ଆମପାଇଁ କଥା କହୁଥିଲା ଆଖିରୁ ଲୁହ ପୋଛୁଥିଲା,
ପିଠିରେ ହାତ ମାରୁଥିଲା
ସ୍ୱପ୍ନ ନ ଥିଲା ଯା'ର ଆପଣା ପାଇଁ ଅନେକ କିଛି କରି ଯିବାକୁ ।
ଆମ ଗର୍ବ ଅଭିମାନର ଯେ ଥିଲା କେନ୍ଦ୍ରବିନ୍ଦୁ ମାଟିର ସୂର୍ଯ୍ୟ,
ମୁଁ ତାକୁ ଖୋଜିଲି ଭୂଦାନ ଅଫିସ, ଯେତେ ସବୁ ସେବାସଦନ
ଆଜି ତା ହାତଗଢ଼ା କର୍ମପୀଠ ମଣିଷର ସେବାପାଇଁ ଯେଉଁ ମହାନ ତୀର୍ଥମାନଙ୍କର
ପ୍ରବେଶ ପଥରେ ସେ ଲେଖିଯାଇଛି 'ଭଲ ମଣିଷ ହୁଅ, ହୁଅ ମଣିଷର ସେବକ' ।
ମୋ ପାଦ ଦୁଇଟି ଥମିଗଲା
ସେହି ମହାନ ଆତ୍ମାପାଇଁ ମୋ ହାତରେ କଲିକା ଝରି ପଡ଼ିଲା'

ମୁଁ ଅସହାୟ ହୋଇ ଉଠିଲି ଗୋଟିଏ ବୁଡ଼ି ଯାଉଥିବା ଜାହାଜର ଶେଷଯାତ୍ରୀ,
ଉଡ ପାଟିଡ ହୋଇଥିବା ଏକ ଜୀବନ୍ତ କପୋତର ସମସ୍ତ ପର,
ମୁଁ କହିଲି ଆମେ ଏବେ ଧସ୍ତି ପଡ଼ିଯିବା!

ଆମେ ଯେତେ ସବୁ ନକଲି ମଣିଷ

ତାଙ୍କପାଇଁ ଚକ୍ ଚକ୍ ଦିଶୁଥିଲେ.........

ବେଗବାନ ମନେହେଉ ଥିଲେ ତଟିନୀ ପରି ଧସ୍ତି ଶ୍ରାବଣର ।
ଭୂଦାନ ଅଫିସ ସେବାସଦନ ଆଉ ଯେତେ

ସବୁ ତା'ର ହାତଗଢ଼ା ଅନୁଷ୍ଠାନ

ସବୁ ବନ୍ଦ କରିଦିଅ, ବନ୍ଦ କରିଦିଅ ସେ ସବୁର ପ୍ରବେଶ ଦ୍ୱାର......
ସକାଳ ସୂର୍ଯ୍ୟର ଆଲୋକ ଶିଖାପରି ଆମର ଯେଉଁ ଉତ୍ତର ପୁରୁଷ
ଆଗେଇ ଆସୁଛନ୍ତି ଅନୁସନ୍ଧିତ୍ସୁ ମନ ନେଇ ଏକ ନୂତନ ଦିଗନ୍ତର,
ସେମାନେ ପ୍ରବେଶ ନ କରନ୍ତୁ ଅନ୍ତରାଳରେ ଆବିଷ୍କାର ନ କରନ୍ତୁ ଆମପରି
ଅନେକ ନ କଲି ପାଲ ଓ କାଗଜ ମଣିଷଙ୍କର ଗନ୍ଧହୀନ ଫୁଲକାନନ
ପ୍ରଚୁର ସର୍ଜିନ ବେଲୁନ ଆଉ ହାଡମାଂସର ଅସଂଖ୍ୟ କ୍ରୀଡ଼ନକ,
ସେମାନେ ତୃପ୍ତ ରହନ୍ତୁ, ରହନ୍ତୁ, ସେମାନେ ଶାନ୍ତ ଗତି ସେମାନଙ୍କର

ମନ୍ଥର ନ ହେଉ

ସେମାନେ ହୁଅନ୍ତୁ ଚିର ବେଗବାନ, ଏକ ମହାନ ସ୍ରୋତର ପ୍ରତୀକ......
ସେମାନେ କେବଳ ପାଠକରି ତୃପ୍ତ ହୁଅନ୍ତୁ ପୁଣ୍ୟ ତୀର୍ଥ ମାନଙ୍କର ତୋରଣରେ
ସେ ମହାନ-ମନ୍ତ୍ର.........'ଭଲ ମଣିଷ ହୁଅ, ହୁଅ ମଣିଷର ସେବକ'
ଆଗ୍ନେୟ ହରିହର ବଞ୍ଚି ରହନ୍ତୁ, ବଂଚିଯାଉ ତାଙ୍କର ଉତ୍ତର-ପୁରୁଷ ।

( ଆଗ୍ନେୟ ମହାଶୟଙ୍କ ବିୟୋଗରେ ରଚିତ )



# ମୋ ହରିଦଦେଇ

ଶ୍ରୀମତୀ ଇନ୍ଦିରା ଦେବୀ

ଋଷି ପ୍ରଥମ ଆଶ୍ଚର୍ଯ୍ୟ ହରିହର ମୋର ଦଦେଇ । ମୋ ବାପା ପଣ୍ଡିତ ନୀଳକଣ୍ଠଙ୍କ ଠାରୁ ସେ ୩ବର୍ଷ ବଡ଼ ଓ ଜ୍ଞାତିରେ ତାଙ୍କର କକେଇ ପୁଅ ଭାଇ ।

ଅତି ପିଲାଦିନେ ତାଙ୍କୁ ଦେଖିବା କଥା ମୋର ମନେ ପଡ଼ୁ ନାହିଁ । କାରଣ, ସେ ସବୁବେଳେ ପ୍ରାୟ ଦେଶ ଓ ଦଶର କାମରେ ଲାଗିଥାନ୍ତି । ଘରେ ପ୍ରାୟ ରହୁନ୍ତି ନାହିଁ । ମୋର ହେତୁ ହେଲା ବେଳକୁ ତାଙ୍କର ସ୍ତ୍ରୀ କି ପିଲା କେହି ନ ଥିଲେ, ଯଦିଓ ସେ ଦୁଇଥର ବିଭା ହୋଇଥିଲେ । ପ୍ରଥମ ସ୍ତ୍ରୀଙ୍କୁ ୧୧ ବର୍ଷ ବେଳେ, ସେ ବସନ୍ତରେ ଆକ୍ରାନ୍ତ ହୋଇ ମରି ଯିବାରୁ ତାଙ୍କ ତଳ ଭଉଣୀକୁ ଦ୍ୱିତୀୟ ଥର ବିଭା ହୋଇଥିଲେ । ସେ ବି ୧୮ ବର୍ଷ ବୟସରେ ପ୍ରସବ କରି ନପାରି ମରିଗଲେ । ତା'ପରେ ସେ ଆଉ ବିବାହ କଲେ ନାହିଁ । ତାଙ୍କ ଶ୍ୱଶୁରଘର ତାଙ୍କ ଘରଠାରୁ ୧୦।୧୨ ଘର ଛାଡ଼ି । ସେଇ ସାଇରେ । ତାଙ୍କର ୫ ଜଣ ଶଳାଙ୍କ ଭିତରୁ ସତ୍ୟବାଦୀ ବନ ବିଦ୍ୟାଳୟର ଆରମ୍ଭରେ ଶିକ୍ଷକତା କରିଥିବା ମଧୁସୂଦନ ମିଶ୍ରେ ହେଉଛନ୍ତି ବଡ଼ ଶଳା ଓ ପ୍ରଭୁରଙ୍କ ଅନନ୍ତ ମିଶ୍ର ସାନ ଶଳା ।

ସେ ପୁରୀରେ ତାଙ୍କ ସାନଭାଇ ଡାକ୍ତର ଶଙ୍କର ଦାଶଙ୍କ ପାଖରେ ଅଧିକାଂଶ ସମୟ ରହୁଥିଲେ । ମୁଁ ପୁରୀ ଗଲେ ଶଙ୍କର କକେଇଙ୍କ ଦାଣ୍ଡପିଣ୍ଡା ଉପରେ ଗୋଟିଏ ଅରଟ ଧରି ବସି ସୂତା କାଟୁଥିବାର ତାଙ୍କୁ ଦେଖେଇ ଓ ମୁଣ୍ଡିଆ ମାଇଲେ ସେ ବରାବର "ଆୟୁଷ୍ମତୀ ହୁଅ" ବୋଲି ଆଶୀର୍ବାଦ କରନ୍ତି ।

ପ୍ରଥମେ ହରି ଦଦେଇଙ୍କୁ ପାଖରେ ପାଇଥିଲୁ । ୧୯୫୭ ମସିହା ଫେବୃଆରୀ ମାସରେ ନୂଆଦିଲ୍ଲୀ ଫିରୋଜସା ରୋଡ଼ ୧୦ନମ୍ବର ଘରେ । ଆମେ ଥିବାବେଳେ ସେ ଦିନେ ରାତିରେ ଆସି ପହଞ୍ଚିଥିଲେ । ତାଙ୍କ ଆସିବା ବେଳକୁ ମୁଁ ଶୋଇ ପଡ଼ିଥାଏ । ସକାଳେ ୬ଟା ବେଳକୁ ଉଠିଲି । ବୋଉ ମତେ କହିଲା, "ଯା, ଦଦେଇ ଆସିଛନ୍ତି । ତାଙ୍କର କଣ ଦରକାର ହେବ ବୁଝିବୁ ।" (ମୋ ବୋଉ ତାଙ୍କର ଭାଇବୋହୂ ହୋଇଥିବାରୁ ତାଙ୍କୁ ଦେଖା ଦେବା ପ୍ରଥା ଆମ ସମାଜରେ ସେତେବେଳେ ନ ଥିଲା ) । ମୁଁ ତାଙ୍କ ଶୋଇବା ଘରକୁ ଯାଇ ଦେଖିଲା ବେଳକୁ ସେ ଖଣ୍ଡିଏ ଆସନ ଉପରେ ଉପାସନାରେ ବସିଛନ୍ତି । ମୁହଁରେ କଳା କଳା ଦାଢ଼ି, ନିଶ ଓ ମୁଣ୍ଡରେ କଳାବାଳ, ସେ ଆଖିବୁଜି ଉପାସନା କରୁଛନ୍ତି, କି ସୁନ୍ଦର ଭାବ ଗମ୍ଭୀର ଚେହେରା, କି ଶାନ୍ତ, କି ଧୀର, ସତେକି ଜଣେ ଯୋଗୀ ଯୋଗାସନରେ ନିବିଷ୍ଟ ଅଛନ୍ତି । ତାଙ୍କ ଧ୍ୟାନ ଭାଙ୍ଗିବା ଯାଏ ତାଙ୍କୁ ଚାହିଁ ମୁଁ ଟିକିଏ ଦୂରରେ ଚୁପ ହୋଇ ବସିଲି । କେତେ ସମୟ ପରେ ତାଙ୍କ ଧ୍ୟାନ ଭାଙ୍ଗିବାରୁ ମତେ ଚାହିଁ ସେ ଟିକିଏ ହସିଲେ । ମୁଁ ପଚାରିଲି, "ବୋଉ କହିଲା, ଦାନ୍ତକାଠି ଓ ଗାଧୋଇବା ପାଇଁ ଗରମ ପାଣି ତୁମର କେତେବେଳେ ଲୋଡ଼ା ବୁଝିବାକୁ ।" ଏ କଥା ଶୁଣି ସେ ପୁଣି ଟିକିଏ ହସି ଦେଇ କହିଲେ, "ମୋର ଆଉ କିଛି ଦରକାର ନାହିଁ, ମୁଁ ଦାନ୍ତଘଷା, ଗାଧୁଆ ସବୁ ସାରିଲିଣି ।" ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା—ସେତେବେଳକୁ ସୂର୍ଯ୍ୟ ଉଠି ନଥାନ୍ତି—ଦିଲ୍ଲୀରେ ଭାରି ଶୀତ ହେଉଥାଏ । ଫେରି ଆସି ମୁଁ ବୋଉକୁ ସେ କଥା କହିବାରୁ ବୋଉ ଟିକିଏ ବିବ୍ରତ ଓ ବ୍ୟସ୍ତ ହୋଇ ପଡ଼ିଲା । ମତେ କହିଲା, "ଯା ଦଦେଇଙ୍କୁ କହିବୁ, ଏଠି ଭାରି ଥଣ୍ଡା—ସେ ଏପରି କାକର ପାଣିରେ ଭୋରରୁ ଗାଧୋଇବେ ନାହିଁ, ତା' ହେଲେ ନିଶ୍ଚୟ ଥଣ୍ଡା ଧରି ଜ୍ୱର ହେବ ।" ମୁଁ ଯାଇ ଦଦେଇଙ୍କି ସେ କଥା କହିଲି । ସେ କହିଲେ, ମା, ଯା ବୋହୂଙ୍କୁ କହିବୁ, ଏ ଦେହ ପଚାଶ ଖରା କାକର ଖାଇ ଖାଇ ଶକ୍ତ ହୋଇଛି ଥଣ୍ଡା ପାଣିରେ ଗାଧୋଇ ପଡ଼ିଲେ, ଏମିତି ଟିକିକେ ମତେ କଉଁ ଥଣ୍ଡା ଧରିବ ? ମୋର କିଛି ହେବ ନାହିଁ, ମୋର ତ ସବୁକାଳେ ଏ ଅଭ୍ୟାସ, ବୋଉ ମୋ ପାଇଁ ମୋଟେ ବ୍ୟସ୍ତ ହେବେ ନାହିଁ ।" ସେ ଦିନଟି ଆମର ଖୁସିରେ କଟିଲା । ତା'ପରେ ଦିନ ଦଦେଇ ସେଇପରି

ଅତି ଭୋରରୁ ଥଣ୍ଡା ପାଣିରେ ଗାଧୋଇ ପଡ଼ିଲେ ଏବଂ ଅପରବେଳା ପ୍ରାୟ ୪ଟା ବେଳକୁ ତାଙ୍କୁ ଘୋର ଜ୍ୱର ହେଲା । ସବାଉ ଖୁବ ବ୍ୟସ୍ତ ହେଉଥାଏ । ନନା ଆସେମ୍ବ୍ଲିରୁ ଫେରି ଡାଃ ଖାରେ M.L.A. (ଆମ ସାମନା ବଙ୍ଗଳାରେ ଥାଆନ୍ତି) ଙ୍କୁ ଡକାଇ ପଠାଇଲେ । ଡାଃ ଖାରେ ଆସି ଦଦେଇଙ୍କୁ ପରୀକ୍ଷା କରି ଅନ୍ୟ ଔଷଧ ସହିତ କୁଇନାଇନ ଦେଲେ । ତାଙ୍କୁ ବାର୍ଲି, ହରଲିକ୍ସ ଓ ଔଷଧ ପ୍ରଭୃତି ଖୁଆଇବା ଭାର ମୋ ଉପରେ ପଡ଼ିଲା । ବାର୍ଲି, ହରଲିକସ ଦେଲେ ସେ ଖାଇ ଦିଅନ୍ତି—ମାତ୍ର ଔଷଧ ଦେବି ବୋଲି ଯେତେଥର ଡାକେ ସେ ସେତିକି ଥର କହନ୍ତି, "ମା, ମୁଁ ୧୨।୧୪ ବର୍ଷ ହେଲା କୌଣସି ଔଷଧ ଖାଇ ନ ଥିଲି, ଆଜି ମୋର ୧୨ ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା ।"

× × × ×

ଏହାପରେ ତାଙ୍କ ସହିତ ମୋର ଦେଖା ହେଲା, ୭ ବର୍ଷ ପରେ ମୋ ଶ୍ୱଶୁର ଘରଠାରେ । ମତେ ସେତେବେଳେ ୧୭ ବର୍ଷ ବୟସ । ୧୯୪୩ ମସିହା ମାର୍ଚ୍ଚ ମାସ । ଦେହରେ ଖଣ୍ଡିଏ ଖଦଡ଼ ଚଦର ଓ ପିନ୍ଧା ଖଣ୍ଡିଏ ଆଣ୍ଠୁ ନ-ଲୁଚ୍ଚ ଖଦଡ଼ ଧୋତି, କୁଆଡ଼ୁ ବୁଲି ବୁଲି ଆସି ଚୋପ ଗଣେଶ୍ୱରପୁର ପାଖ ସୋବନପୁର ଶ୍ରୀମନ୍ତ ନାମ୍ନୀ ଆଶ୍ରମରେ ପହଞ୍ଚିଥିଲେ । ମୋ ଶ୍ୱଶୁର ଗଣେଶ୍ୱରପୁରର ଜମିଦାର—ସେ ସେତେବେଳର କଂଗ୍ରେସ ମତାବଲମ୍ବୀ ଥିଲେ ଓ ନୀଳକଣ୍ଠ, ହରିହର ପ୍ରଭୃତିଙ୍କୁ ବଡ଼ ସୁଖ ପାଉଥିଲେ । ସେ ଦଦେଇଙ୍କ ଆସିବା ଖବର ପାଇ, ସେଠାକୁ ଯାଇ ତାଙ୍କୁ ଘରକୁ ଡାକି ଆଣିଲେ । ଦଦେଇ ଆସି ଆମ ଭିତର ଅଗଣା ବାରଣ୍ଡାରେ ବସିଲେ । ତାଙ୍କୁ ମୁଁ ଦିଲ୍ଲୀରେ ଯାହା ଦେଖିଥିଲି, ସେ ରୂପ ଆଉ ନ ଥିଲା—ଖୁବ୍ ଶୁଖି ଯାଇଥିଲେ—ଖରାରେ ବୁଲି ବୁଲି ସେ ତମ୍ବା-କଳିଆ ପଡ଼ି ଯାଇଥିଲେ । ମୁଁ ଯାଇ ତାଙ୍କୁ ଓଳଗି ହେବାରେ ମତେ ଡାକି ପାଖରେ ବସାଇ କହିଲେ, "ମା, ତତେ କେତେ ଦିନରୁ ଦେଖିନି । ସେଇ ଯେ ଦିଲ୍ଲୀରେ ମତେ ଜର ହୋଇଥିଲା, ତୁ ମୋର କେତେ ସେବା କରୁଥିଲୁ—ତତେ ଦେଖିବାକୁ ବଡ଼ ଇଚ୍ଛା ଥିଲା," କହି ମୋ ମୁଣ୍ଡକୁ ଟିକିଏ ଆଉଁସି ଦେଇ "ଏଇଠି ବସ" ବୋଲି କହିଲେ ଓ ଦେହ ମୁଣ୍ଡ କଥା ପଚାରି ବୁଝିଲେ । ତା'ପରେ କହିଲେ, "ତୁ ସୂତା କାଟୁଛୁ ତ ?" ମୁଁ କହିଲି, "ମୋର ଅରଟ ନାହିଁ ।" ସେ ପଚାରିଲେ, "ତୁମ ଘରେ କାହାର ଅରଟ ନାହିଁ ?" ମୁଁ ମନା କଲି କହିଲି, "ଶ୍ୱଶୁର ଖଦଡ଼ ପିନ୍ଧନ୍ତି ଯେ, ଆଗେ ସୂତା କାଟୁଥିଲେ—ଏବେ କିଣି କରି ପିନ୍ଧନ୍ତି । (ମୋ ଶ୍ୱଶୁର ମରିବା ଯାଏ ଖଦଡ଼ ପିନ୍ଧୁଥିଲେ) ସେଥିପାଇଁ ସେ କହିଲେ, "ମୁଁ ସୋବନପୁର ଆଶ୍ରମରୁ ଚରଖାଟିଏ ଆଣି ତତେ ସେଥିରେ ସୂତା କଟା ଶିଖାଇ ଦେବି ।" ତା'ପର ଦିନ ଚରଖା ଓ କିଛି ତୁଳା ଆଣି ମତେ ସେଥିରେ କିପରି ସୂତା କାଟିବାକୁ ହେବ ଶିଖାଇ ଦେଇଥିଲେ ।

ଏହାପରେ ୧୯୫୭ ମସିହାରେ ଦଦେଇଙ୍କ ସାଙ୍ଗେ ଦେଖା—ନନା (ବାଚସ୍ପତିଙ୍କ ସରକାରୀ ଘରେ । ସେ ସେତେବେଳେ ସର୍ବୋଦୟ କର୍ମୀ । ପରିଧାନରେ ସେହି-ପରି ଆଣ୍ଠୁ-ନ-ଲୁଚ୍ଚ ଖଦଡ଼ ଧୋତି ଓ ଚଦର । ଏତେ-ବେଳକୁ ତାଙ୍କୁ ଆଖିକୁ ଆଉ ଦେଖାଯାଉ ନଥାଏ—ଖୁବ ବୁଢ଼ା ହୋଇ ଯାଇଥାନ୍ତି, ହାତରେ ଖଣ୍ଡିଏ ବାଡ଼ି । କେଉଁଠି ପଡ଼ିଯାଇ ତାଙ୍କ ଡାହାଣ କପାଳରେ ଅଳ୍ପ ପରି ଠାଏ ଫୁଲିଥାଏ ଓ ଡାହାଣ ନଳି ଗୋଡ଼ ଛିଡ଼ି ବ୍ୟାଣ୍ଡେଜ ବନ୍ଧା ହୋଇଥାଏ । ନନାଙ୍କ ପାଖେ ବସି କଥା ବାର୍ତ୍ତା ହେଉଥାନ୍ତି । ସାଙ୍ଗରେ ଥାନ୍ତି କୃପାସିନ୍ଧୁ ହୋତା । ସବୁବେଳ ପରି ସେଇ ଧୀର, ଶାନ୍ତ ମୂର୍ତ୍ତି । ସେତେବେଳେ ଆମେ (ମୋ ସ୍ୱାମୀ ଓ ପିଲେ) ନନାଙ୍କ ପାଖେ ରହୁଥାଉ । ନନା ମତେ କହିଲେ, "ହରି ଭାଇନା ଓ କୃପାସିନ୍ଧୁ ହୋତା ଏଠି ଖାଇବେ ।" ମୁଁ ଶୋଷାଇ ଘରକୁ ଆସି ସେମାନଙ୍କ ଖାଇବା ଯୋଗାଡ଼ କଲି । ବଢ଼ା ବଢ଼ି କରି ଖାଇବାକୁ ଡାକିବାରୁ ଦଦେଇ ବାଡ଼ିଟି ଧରି ଠୁକୁ ଠୁକୁ ହୋଇ ଆସିଲେ । ଥାଳି ପାଖକୁ ଆସିଲା ବେଳକୁ ମୁଁ ହାତଧରି ଆସନରେ ବସାଇ ଦେଲି । ସେ ଖାଇବାକୁ ଆରମ୍ଭ କଲାବେଳେ ମୁଁ ଦେଖିଲି, ଡାଲି, ତରକାରୀ ଗିନା କିଛି ତାଙ୍କୁ ଦିଶୁନି ସେ ତଳେ ହାତମାରୁଛନ୍ତି । ମୁଁ ଡାଲି ତରକାରୀ ଗିନାରେ ହାତଧରି ଲଗାଇ ଦେଉଥାଏ, ସେ ଖାଉଥାନ୍ତି । ମୁଁ ପାଖରେ ବସି ମାଛରୁ କଣ୍ଟା କାଢ଼ି ପିଲାଙ୍କୁ ଖୁଆଇଲି ପରି ତାଙ୍କ ଭାତ ଥାଳିରେ ମାଛ ରଖୁଥାଏ । ଖୋଲ ପାଇଁ ଥାଳିଆଟି ହାତ ପାଖକୁ ରଖି

ଦେଲି, ସେ ଝୋଳ ଲଗାଇ ମାଛ ଖାଇଲେ ମୁଁ କହିଲି, "ଦଦେଇ ତୁମକୁ ତ ଜମା ଦିଶୁନି, ତମେ ଆଉ ଜମା ବୁଲ ନାହିଁ । ପୁଣି କେଉଁଠି ପଡ଼ିଗଲେ ମୁଣ୍ଡ ଫାଟି ଯିବ ।" ସେ ସେଇ ଆଗପରି ଟିକିଏ ହସି ଦେଇ କହିଲେ, "ଆଉ କଣ ଠାଏ ବସି ପାରିବ ? ବୁଲି ତ ଅଭ୍ୟାସ ହୋଇ ଗଲଣି । ଏ ମୁଣ୍ଡଟା ଫୁଲିଚି ବୋଲି କହୁଚୁ କି ? ମତେ ଦେଖା ଯାଉଚି ଯେ, ଆଜି ମୋ ଭଣେଜା ଘରଠି ପିଣ୍ଡାରେ ଓହ୍ଲାଇଲି ବେଳେ ଟିକିଏ ଗୋଡ଼ ଖସି ପଡ଼ିଗଲି—ମୁଣ୍ଡଟା ପିଣ୍ଡା ଦାନ୍ଧରେ ବାଜି ଯିବାରୁ ଏମିତି ଫୁଲି ଯାଇଚି ନା ।" ମୁଁ କହିଲି, "ହଁ, ଯେ ଗୋଡ ଏତେ ଖଣ୍ଡିଆ କେମିତି ହେଲା ? ତମେ ସିନା ମାନୁନ, ତୁମକୁ ଜମା ଦିଶୁନି ।" ସେ ପୁଣି ହସି ହସି କହିଲେ, "ହଇଲୋ ମାଆ, ପାଟଣାରେ ଏବେ ବଡ ବଡ଼ ଡାକ୍ତର ସବୁ ମୋ ଆଖି ଅପରେସନ୍ କରିଚନ୍ତି, ମୁଁ ଯଦି ଦିଶୁନି ବୋଲି କହିବି ସେମାନେ କଣ ଭାବିବେ ?" ମୁଁ ତ ଶୁଣି ସ୍ତମ୍ଭୀଭୂତ । କେଉଁ ବଡ ଡାକ୍ତର କଣ ଭାବିବେ ବୋଲି ସେ ନିଜକୁ ଦେଖା ଯିବାର ବାହାନା କରୁଚନ୍ତି । ଜାଣି ପାରିଲି ଏମିତି ପର ମନରେ କଷ୍ଟ ନଦେବା ବୋଧେ ତାଙ୍କ ଜୀବନର ବ୍ରତ ଥିଲା । ପ୍ରକୃତ ଋଷିମାନେ କଣ ପର ମନରେ ଦୁଃଖ ହେବ ବୋଲି ନିଜେ ଏପରି କଷ୍ଟ କରନ୍ତି ? ରୂପରେ ସିନା ସେ ଋଷି ପ୍ରଥମ ଗୁଣରେ ଥିଲେ ଋଷିଙ୍କ ଠାରୁ ଅଧିକ ଉଦାର ଓ ମହତ ।

ସେ ଦିନ ଫେରିଯିବା ଆଗରୁ ମତେ ଡାକି କହିଲେ, "ମାଆ, ତୁ ଗୋଟିଏ କାମ କରିବୁ, ଆମ ସର୍ବୋଦୟ କର୍ମୀଙ୍କ ପାଇଁ ଗୋଟିଏ ମାଠିଆ ରଖି, ପ୍ରତିଦିନ ତମ ଖାଇବା ଚାଉଳରୁ ମୁଠାଟିଏ ଲେଖାଁଏ ଚାଉଳ ସେଥିରେ ପକାଇବୁ । ମାସ ଶେଷରେ ଆମେ ଆସି ସେ ଚାଉଳ ନେଇଯିବୁ ।

ମୋର ମନେ ପଡିଲା, ଏ ହରି ଦଦେଇ ଗାଁର ସମସ୍ତ ଜମିବାଡ଼ି, ଘରଦ୍ୱାର ତାଙ୍କ ତିନି ଭାଇ (ରାମଚନ୍ଦ୍ର ଦାଶ, ଗୋବିନ୍ଦ ଦାଶ, ଶଙ୍କର ଦାସ ଙ୍କୁ ଛାଡ଼ି ଦେଇଥିଲେ— କହିଥିଲେ, "ମୋର ଏ ସବୁ କଣ ହେବ—ତୁମେ ସବୁ ବାଣ୍ଟି ନିଅ—ମୁଁ ଯେତେବେଳେ ଦେଶ କାମରୁ ଫେରୁ-ଥିବି, ଶଙ୍କର ପାଖେ ରହୁଥିବି "

ମୁଁ ଭୁବନେଶ୍ୱରରେ ଥିବାଯାଏ ତାଙ୍କ କଥା ପାଳନ କରୁଥିଲି ଏବଂ ସେ ନନାଙ୍କ ପାଖକୁ ଆସିଲି ବେଳେ ତାଙ୍କୁ ସେ ଚାଉଳତକ ଦେଉଥିଲି । ସେ ଯେ କି ଖୁସି ହେଉ-ଥିଲେ ତାଙ୍କର ସେ ମୁହଁର ଉଲ୍ଲାସ ଆଜିଯାଏ ଭୁଲି ପାରୁନାହିଁ ।

ଏଇମାନେଇ ବାସ୍ତବରେ ଦେଶ ପାଇଁ ସର୍ବସ୍ୱ ତ୍ୟାଗୀ—ସର୍ବୋଦୟ ପ୍ରେମୀ ।



# ଆଚାର୍ଯ୍ୟ ହରିହର

ଅଧ୍ୟାପିକା—ଶ୍ରୀମତୀ ପ୍ରତିଭା ମିଶ୍ର

ଉତ୍କଳ ଜନନୀ ଯେତେବେଳେ ଶ୍ରୀହୀନା, ଓଡ଼ିଆ ଜାତି ଯେତେବେଳେ ମୁମୂର୍ଷୁ, ସେତିକିବେଳେ ଏ ଦେଶରେ ଆବିର୍ଭାବ ଘଟେ ସତ୍ୟବାଦୀ ଗୋଷ୍ଠୀର । ଏ ଗୋଷ୍ଠୀର ପଞ୍ଚ ସାଧକମାନଙ୍କ ମଧ୍ୟରେ ଆଚାର୍ଯ୍ୟ ହରିହର ଅନ୍ୟତମ । ସେ ଥିଲେ ଏକାଧାରରେ ସଂସ୍କାରକ, ବିପ୍ଳବୀ, ରାଜନୀତିଜ୍ଞ, ସମାଜସେବକ, ଜନନେତା, ଓ ଲେଖକ, । ତାଙ୍କର ଥିଲା ଅସାଧାରଣ ବ୍ୟକ୍ତିତ୍ୱ, ଦେଶାତ୍ମବୋଧ, ତ୍ୟାଗ ଓ ମହତ୍ତ୍ୱ, ଜାତି ପ୍ରୀତି ଥିଲା ତାଙ୍କର ଅସୀମ । ମାନବ-ତାର ଅବତାର ସେ । ମାନବାତ୍ମାର ଏକ ଶ୍ରେଷ୍ଠ ପ୍ରତୀକ । ତାଙ୍କଠାରେ ଦେବତ୍ୱ ପ୍ରକଟିତ ହେଉଥିଲା । ସେ ଥିଲେ ଈଶ୍ୱରଗତ ପ୍ରାଣ । ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକ ଭାବେ ସେ ଯେପରି ଖ୍ୟାତି ଅର୍ଜନ କରିଥିଲେ, ସେହିପରି ଜନନେତା, ଜନସେବକ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ସେ ନିଷ୍ଠାପର ଭାବରେ ସାରାଜୀବନ ଜନ ସେବାରେ ନିଜକୁ ଆତ୍ମୋତ୍ସର୍ଗ କରିଥିଲେ । ସେ ଥିଲେ ସତ୍ୟବାଦୀ ଗୋଷ୍ଠୀର ଯଥାର୍ଥ ମହାପୁରୁଷ, ଜନସେବକ ।

ଆଚାର୍ଯ୍ୟ ହରିହର ୧୮୭୭ ମସିହା ଫାଲଗୁନ ମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ସାକ୍ଷୀଗୋପାଳ ନିକଟସ୍ଥ ଶ୍ରୀ ରାମଚନ୍ଦ୍ରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଶ୍ରୀ ମହାଦେବ ଦାସ ପୁରୀର ଗଜପତିଙ୍କ ଠାରୁ ବ୍ରହ୍ମା ଉପାଧି ପାଇଥିଲେ । ୧୯୦୯ରେ ସତ୍ୟବାଦୀରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କଲେ ପଣ୍ଡିତ ଗୋପବନ୍ଧୁ ଦାସ । ହରିହର ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏଠାରେ ଶିକ୍ଷକତା କଲେ । ଏ ଦେଶର ଭାବି ନାଗରିକମାନଙ୍କୁ ସେ ଗଢ଼ିଲେ ବକୁଳବନର ସ୍ନିଗ୍ଧଚ୍ଛାୟା ତଳେ । ସେ ଶିକ୍ଷାର୍ଥୀମାନଙ୍କ ପାଇଁ ଜାତୀୟ ସେବା ଶିବିର, ସ୍ୱେଚ୍ଛାସେବୀ ବାହିନୀ ଆଦି ଗଢ଼ିଥିଲେ । ଛାତ୍ରବତ୍ସଳ ଶିକ୍ଷକ ହରିହର ଛାତ୍ରମାନଙ୍କୁ ନୈତିକତା ଓ ସାଧୁତା ସଂପର୍କରେ ଶିକ୍ଷା ପ୍ରଦାନ କରୁଥିଲେ । ତାଙ୍କର ଶିକ୍ଷାଧାରା ଥିଲା ବୈପ୍ଳବିକ । କାର୍ଯ୍ୟଦକ୍ଷତା ଓ ପରକୁ ଆପଣାର କରିବାର ଗୁଣ ତାଙ୍କୁ ବେଶ୍ ଲୋକପ୍ରିୟ କରିଥିଲା । ତାଙ୍କର ସ୍ନେହ, ଶ୍ରଦ୍ଧା ଓ ପବିତ୍ରତା ଯୋଗୁଁ ପିଲାମାନେ ଭଲମଣିଷ ହେବାର ପ୍ରେରଣା ପାଉଥିଲେ । ଶିକ୍ଷକ ଓ ଛାତ୍ରମାନଙ୍କର ପରମ ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ସେ ଛାତ୍ରମାନଙ୍କୁ ସର୍ବଦା କହୁଥିଲେ "ଭଲ ମଣିଷ ହୁଅ ।" ସେ ନିଜେ ଯେପରି ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ ଛାତ୍ରମାନଙ୍କୁ ମଧ୍ୟ ସତ୍ୟବାଦୀ ହେବା ପାଇଁ ଶିକ୍ଷା ଦେଉଥିଲେ । ଛାତ୍ରମାନଙ୍କ ମଧ୍ୟରେ ଚରିତ୍ରବତ୍ତା, ନିଷ୍ଠା ତଥା ସ୍ୱଦେଶ ପ୍ରୀତି ଭାବ ସୃଷ୍ଟି କରିବା ପାଇଁ ସେ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ଛାତ୍ରମାନଙ୍କ ପ୍ରତି ତାଙ୍କର ପିତୃତୁଲ୍ୟ ସ୍ନେହ ଓ ଶ୍ରଦ୍ଧା ଥିଲା । ପୂର୍ବକାଳରେ ଆଶ୍ରମମାନଙ୍କରେ ଯେଉଁମାନେ ବିଦ୍ୟାର୍ଥୀମାନଙ୍କର ସଂପୂର୍ଣ୍ଣ ଶିକ୍ଷା ଦାୟିତ୍ୱ ନେଇ ନିଜ ତତ୍ତ୍ୱାବଧାନରେ ରଖି ବିଦ୍ୟା ଦାନ କରୁଥିଲେ ସେମାନଙ୍କୁ 'ଆଚାର୍ଯ୍ୟ' କୁହାଯାଉଥିଲା । ସେମାନେ ସତ୍ୟବାନ୍, ଦୟାବାନ୍ ଆଦି ଗୁଣରେ ବିଭୂଷିତ ହେଉଥିଲେ । ଆଚାର୍ଯ୍ୟ ହରିହରଙ୍କ ଠାରେ ଏହି ସବୁ ଗୁଣ ପରିଲକ୍ଷିତ ହୋଇଥିବାରୁ ତାଙ୍କୁ 'ଆଚାର୍ଯ୍ୟ' ବୋଲି କୁହା ଯାଉଥିଲା । ଆଦର୍ଶ ଓ ତ୍ୟାଗର ଜୀବନ୍ତ ପ୍ରତିମୂର୍ତ୍ତି ଥିଲେ ସେ । କ୍ରୋଧ ତ୍ୟାଗ କରିବା କୌଣସି ମନୁଷ୍ୟ ପକ୍ଷରେ ସହଜ ସାପେକ୍ଷ ନୁହେଁ । କିନ୍ତୁ ଆଚାର୍ଯ୍ୟ ତାହା ମଧ୍ୟ ତ୍ୟାଗ କରିଥିଲେ ।

ସେ ଥିଲେ କର୍ମଯୋଗୀ । କର୍ମ ସହିତ ଦୃଢ଼ ଈଶ୍ୱର ଭକ୍ତି ହିଁ ତାଙ୍କର ଆଦର୍ଶ ଥିଲା । ତାଙ୍କର ବ୍ୟକ୍ତିଗତ କର୍ମମୟ ଜୀବନରେ ଉଚ୍ଚ ମାନବିକ ମୂଲ୍ୟବୋଧ ଓ ଚରିତ୍ର ବଳର ପରିଚୟ ମିଳେ । ମାନବିକ ମୂଲ୍ୟବୋଧ ରକ୍ଷାକରି ସେ ନିଃସ୍ୱାର୍ଥଭାବେ ରାଜନୀତିକ ଓ ଜନସେବାମୂଳକ କାର୍ଯ୍ୟ କରି ପାରୁଥିଲେ । ତାଙ୍କ ପ୍ରତି କାହାର ବିଦ୍ୱେଷ ଭାବ ନ ଥିଲା । ରାଜନୈତିକ ଜୀବନରେ ମଧ୍ୟ ସେ କାହା ଉପରେ ବିରକ୍ତ ହେଉ ନ ଥିଲେ । ସେଥିପାଇଁ ତତ୍କାଳୀନ

ରାଜନୈତିକ ନେତାମାନେ ତାଙ୍କ ପ୍ରତି ଗଭୀର ଭକ୍ତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ନୈତିକ ପ୍ରଭାବ ଦ୍ୱାରା ସେ ସମସ୍ତଙ୍କୁ ଏକଜ କରି ପାରୁଥିଲେ ।

ଦେଶ ଓ ଜାତିର କଲ୍ୟାଣ ସାଧନ ପାଇଁ ସେ ସମସ୍ତ ଜୀବନ ଉତ୍ସର୍ଗ କରିଥିଲେ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିଲେ । ଯେତେବେଳେ ସତ୍ୟବାଦୀ ଗୋଷ୍ଠୀ ମହାତ୍ମାଗାନ୍ଧୀଙ୍କର ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଝାଂସ ଦେଇଦେଲା, ସେତେବେଳେ ହରିହର ଶିକ୍ଷକତା ଛାଡ଼ି ପ୍ରତ୍ୟକ୍ଷ ଭାବରେ ଦେଶ ସେବାରେ ନିଜକୁ ନିୟୋଜିତ କଲେ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ପ୍ରେରଣାରେ ସେ ଅସହଯୋଗ ଆନ୍ଦୋଳନ ତଥା ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । କାରାବରଣ ମଧ୍ୟ କରିଥିଲେ । ସେ ଜଣେ ସଂସ୍କାରବାଦୀ ଥିଲେ । ସେ ନାନା ସଂସ୍କାର ମୂଳକ କାର୍ଯ୍ୟକ୍ରମ ଯଥା—ନାରୀ ଜାଗରଣ, ଅସ୍ପୃଶ୍ୟତା ନିବାରଣ, ସାଂପ୍ରଦାୟିକ ଏକତା ପ୍ରତିଷ୍ଠା, ସୂତାଯଜ୍ଞ, ଗ୍ରାମ ସଫେଇ ବା କଂଗ୍ରେସ ସଙ୍ଗଠନ, ଭୂଦାନ ଆନ୍ଦୋଳନରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ଦୃଷ୍ଟି ସଂକୀର୍ଣ୍ଣ ନ ଥିଲା । ସେ ଜାତିଭେଦ ମାନୁ ନଥିଲେ । ଧର୍ମ, ଜାତି, ଭାଷା ଓ ଦେଶର ସଂକୀର୍ଣ୍ଣତା ଭୁଲି ବିଶ୍ୱ ମାନବ ଭାବରେ ଉଦ୍‌ବୁଦ୍ଧ ହେବାକୁ ସେ ପ୍ରେରଣା ଦେଇ ଥିଲେ । ଛାତ୍ର ଜୀବନରୁ ଆରମ୍ଭ କରି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଜନସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଦୁଃସ୍ଥ ସେବାକୁ ସେ ଭଗବତ୍ ସେବା ତୁଲ୍ୟ ମଣୁଥିଲେ । ପରୋପକାରକୁ ନିଜର ବ୍ରତବୋଲି ଧରି ନେଇଥିଲେ । ସହିଷ୍ଣୁତାର ଅବତାର ଥିଲେ ସେ । ପରର ମଙ୍ଗଳ ପାଇଁ ସର୍ବଦା ବ୍ୟସ୍ତ ରହି ନିଜର ଶରୀର ପ୍ରତି ମଧ୍ୟ ବିଶେଷ ଧ୍ୟାନ ଦେଇ ପାରୁ ନଥିଲେ । ବସୁଧୈବ କୁଟୁମ୍ବକମ୍—ସେ ସମସ୍ତଙ୍କୁ ଆପଣାର ବୋଲି ଭାବୁଥିଲେ ।

ସେ ସରଳ ଓ ନିରାଡମ୍ବର ଜୀବନଯାପନ କରୁଥିଲେ ବସ୍ତୁର ଚାକଚକ୍ୟ ତାଙ୍କର ନଥିଲା । ଅହଂଭାବ ତାଙ୍କର ଶୁଚିମନ୍ତ ଜୀବନକୁ ସ୍ପର୍ଶ କରିପାରି ନଥିଲା । କ୍ଷମତାର ଆସ୍ଫାଳନ ତାଙ୍କଠାରେ ନଥିଲା । ଧନରେ, ମାନରେ, କ୍ଷମତାରେ ବଡ଼ ହେବାର ସ୍ୱପ୍ନ ସେ କେବେ ଦେଖି ନ ଥିଲେ । ସରକାରୀ ଚାକିରୀକୁ ସେ ଘୃଣା କରୁଥିଲେ । ସେ ଯେପରି ସ୍ୱାଧୀନଚେତା ଥିଲେ, ସତ୍ୟପ୍ରତି ସେହିପରି ତାଙ୍କର ଥିଲା ଅଟଳ ବିଶ୍ୱାସ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ତାଙ୍କୁ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧି ପ୍ରଦାନ କରା ଯାଇ ଥିଲା । କିନ୍ତୁ ସେ ଗ୍ରହଣ କରି ନଥିଲେ । ତାଙ୍କର ଷାଠିଏ ବର୍ଷ ପୂର୍ତ୍ତିରେ ତାଙ୍କୁ ଏକ ଟଙ୍କା ଥଳୀ ଉପହାର ଦିଆ ଯାଇଥିଲା, କିନ୍ତୁ ସେ ତାକୁ ହରିଜନଙ୍କ ସାହାଯ୍ୟ କାର୍ଯ୍ୟରେ ଲଗେଇ ଦେଇଥିଲେ ।

ଜନସେବ ଓ ଦେଶସେବା ସଙ୍ଗେ ସାହିତ୍ୟ ସେବା ମଧ୍ୟ ତାଙ୍କର ଥିଲା । ସେ Child's Easy First Grammar ନାମକ ପିଲାଙ୍କ ପାଇଁ ଯେଉଁ ବହି ଲେଖି ଯାଇଥିଲେ, ତାହା ଆଜିପର୍ଯ୍ୟନ୍ତ ବିଦ୍ୟାଳୟ ମାନଙ୍କରେ ପଢ଼ା ଯାଉଅଛି । ଏତଦ୍‌ବ୍ୟତୀତ 'ସମଶ୍ଳୋକୀ ଗୀତା' ନାମରେ ଏକ ବହି ସଂସ୍କୃତ ବୃତ୍ତରେ ରଚନା କରିଥିଲେ ।

ବାର୍ଦ୍ଧକ୍ୟରେ ସେ ଶ୍ରବଣ ଶକ୍ତି ଓ ଦୃଷ୍ଟିଶକ୍ତି ହୀନ ହୋଇ ପଡ଼ିଥିଲେ ମଧ୍ୟ ସର୍ବୋଦୟ ବାର୍ତ୍ତା ପ୍ରଚାର ଲାଗି କାର୍ଯ୍ୟରେ ଲାଗି ପଡ଼ିଥିଲେ । ତାଙ୍କର ଆଦର୍ଶନିଷ୍ଠ ମାନବ ସମାଜକୁ ଉଦ୍‌ବୁଦ୍ଧ କରୁ । ତାଙ୍କର ନିଃସ୍ୱାର୍ଥ ସେବା ମହାନତ୍ୟାଗ ଓ ନିଷ୍ଠା ଇତିହାସରେ ଅମର ହୋଇ ରହିବ ।



# ଯାଜ୍ଞିକା

ଯଶୋବନ୍ତ ନାରାୟଣ ଧର
ଅଧ୍ୟାପକ,

ତମେ ତା ଆଗରୁ ବମ୍ବେରେ ଥିଲ ? ନା ?...... ପ୍ରଲଂବମାନ ସମୟର କେଉଁ ବନ୍ଧରେ ତମ ସହିତ ମୋର ପରିଚୟ !

କେମିତି ଏକ ଅସହ୍ୟ ଯନ୍ତ୍ରଣା........ କିନ୍ତୁ ସେହି ଯନ୍ତ୍ରଣାର ମାଧୁର୍ଯ୍ୟ ମୋତେ ବେଳେ ବେଳେ ମୁଗ୍‌ଧ କରି ରଖେ, ଆଜିକାଲି, ଏ ବୟସରେ ବି !

ଅର୍ଚ୍ଚନା !

କିଏ କହିଥିଲି ଏ ନାଆଁ ଟାର ବିଶେଷ କିଛି ମୂଲ୍ୟ ନାହିଁ, କିନ୍ତୁ ମୁଁ ତମ ସହିତ ପରିଚିତ ହେଲା ବେଳକୁ ତମେ ଏଇ ନାଆଁରେ ବେଶ ଜଣାଶୁଣା ହୋଇଯାଇ ଥିଲ ।

ଅର୍ଚ୍ଚନା, ବଂବେରେ ମଡେଲିଂ କରୁଥିଲ, ତା'ପରେ ହିପ୍‌ପିଜିମ......No bomb but flower··· ଜୀବନର ବ୍ୟର୍ଥତା ବୋଧହୁଏ ତମକୁ କ୍ଷଣକ ପାଇଁ କାତର କରି ଦେଇଥିଲା, ମାତ୍ର ତା ପରେ.........

× × × ×

ମୋର ଠିକ ମନେ ଅଛି ମୁଁ ଅଗଷ୍ଟରେ ଋଷିକେଶରେ ପହଞ୍ଚି ଥିଲି । ହରଦ୍ୱାର ଋଷିକେଶ, ପୁଣି ଋଷିକେଶରୁ ହରଦ୍ୱାର ଅସ୍ଥିର ଭାବେ ଘୂରିବୁଲୁଥାଏ । ଉଦ୍ଦେଶ୍ୟ ଯୋଗାଭ୍ୟାସ । ସେଇଥିପାଇଁ ତ ସୁଦୂର ଓଡ଼ିଶାରୁ ଏତେ ବାଟ ଚାଲି ଆସିଥିଲି, ତଥାପି ସେଇ କେତେଦିନ କାହିଁକି କେଜାଣି କିଛି ଠିକ କରି ପାରୁ ନ ଥିଲି ! କିଛିଦିନ ପରେ ଅବଶ୍ୟ ସାରସ୍ୱତ ମୋ ପାଇଁ ସବୁ ବ୍ୟବସ୍ଥା କରି ଦେଲେ ମୁଁ ଚୈତନ୍ୟ କଲେଜରେ ନାଆଁ ଲେଖାଇ ଯୋଗମାର୍ଗ ଅଭ୍ୟାସରେ ଲାଗି ପଡ଼ିଲି ।

ପ୍ରାୟ ମାସେ ପରେ, ହଁ ମାସେ ପରେ ଶୀତ ଆସି ଯାଇଥାଏ । ଠିକ୍ ଲଛମନ୍ ଝୁଲାରୁ ବାହାରି ଯିବାକୁ ପାଦ ପକାଇଛି ପଛରୁ ଡାକିଲେ ସାରସ୍ୱତ । ଲଛମନ ଝୁଲାର ଦଉଡ଼ିକୁ ହାତରେ ଧରି ସାରସ୍ୱତଙ୍କ ଦକ୍ଷିଣ ପାର୍ଶ୍ୱରେ ଠିଆ ହୋଇଥିଲ ତମେ !

ଅର୍ଚ୍ଚନା ! ସୁନେଲି କେଶ ଗୁଚ୍ଛ ତମର ପବନରେ ଗୋଟି ଗୋଟି ହୋଇ ଉଡ଼ୁଥାଏ । ଅସ୍ତ ସୂର୍ଯ୍ୟର କିରଣରେ କିଛିଟା ରଙ୍ଗୀନ ଶୁଭ୍ର ମଲ୍ଲୀକା ପରି ସତେଜ ମୁଖ ମଣ୍ଡଳ ଆଉ ଆୟତ ମୁଗ୍‌ଧ ଦୁଇଟି ଆଖିରେ ନୀଳ ଗଭୀର ସମୁଦ୍ରର ଉଚ୍ଛଳତା !

ଚହ୍ଲିଲ, ସେଇଦିନ ଶୁଣିଥିଲି ତୁମର ନାମ ଅର୍ଚ୍ଚନା ଆଉ ଜାଣିଥିଲି ପ୍ରାୟ ୪ବର୍ଷ ହେବ ବେଦାଧ୍ୟୟନ କରୁ ଥିଲ ତମେ ! ସେଇଦିନ ସେତିକିକେବଳ ଆମ ପରିଚୟର ବିସ୍ତାର ସେତିକି ଭିତରେହିଁ ସୀମିତ ଥିଲା ।

ସାରସ୍ୱତ ପରିଚୟ କରେଇ ଦେଲେ ତମେ ହସି ହସି କଥା କହିଲ । ହଁ, ହସିଥିଲ, ଠିକ ମନେ ଅଛି । ମୋର କିନ୍ତୁ ସେଇ ମୂହୁର୍ତ୍ତରେ ମନେ ହୋଇଥିଲା ଯେ ସେଇ ସାମାନ୍ୟ ହସର ପଶ୍ଚାତ୍ତରେ ଅସାମାନ୍ୟ ଅପର୍ଯ୍ୟାପ୍ତ କେଉଁ ବେଦନା ଗୁମୁରି ଉଠିଥିଲା । ରାତ୍ରିର ଶେଷଯାମରେ ବଂଶୀର ବିଳାପ ପରି କରୁଣ ଅଥଚ ମର୍ମସ୍ପର୍ଶୀ ସେଇ ଧ୍ୱନି ।

× × × ×

କି ପାଥେୟ ସଂବଳ କରି ଏମିତି ଘୂରି ବୁଲୁଥିଲି, ଜାଣି ନଥିଲି । ଜୀବନ ଅରଣ୍ୟରେ ପାଗଳାମି ପରି କେଉଁ ସୌରଭର ଏମିତି ଅନ୍ୱେଷଣ କରୁଥିଲି, ତା' ବି ମୁଁ ଜାଣି ନଥିଲି ।

ପ୍ରକୃତରେ ଜାଣିବାକୁ କେବେ ଚେଷ୍ଟା କରି ନଥିଲି ! ଅର୍ଚ୍ଚନା, କିଛିଦିନ ଭିତରେ ତମ ସହିତ ମୋର ଅନ୍ତରଙ୍ଗତା କିନ୍ତୁ ଖୁବ୍ ବଢ଼ି ଯାଇଥିଲା । ସଂସ୍କୃତ ଓ ଭାରତୀୟ ଦର୍ଶନ ସମ୍ବନ୍ଧରେ ତମର ଅନର୍ଗଳ ଆଲୋଚନାରେ ମୁଁ ବିମୋହିତ ହୋଇ ଉଠୁଥିଲି, ଯଦିଓ ମୁଁ ଥିଲି ସେ ସମ୍ବନ୍ଧରେ ସାଧାରଣ ଜ୍ଞାନ ସଂପନ୍ନ । ତମେ ଅନେକ କିଛି ଜାଣିଥିଲ, ବହୁତ ପଢ଼ା ପଢ଼ି କରିଥିଲ ।
ସେଦିନ ମନେ ଅଛି ?

ଟ୍ରେନ ଚାଲିଥାଏ, ଋଷିକେଶରୁ ହରିଦ୍ୱାର ସଂଧ୍ୟାର ମ୍ଳାନ ଗୋଧୂଳି ହିମାଳୟ ପାଦଦେଶର ସେଇ ଶ୍ରେଷ୍ଠ ଇଲାକା ଉପରେ କୁହୁକର ସ୍ପର୍ଶ ଦେଇ ଯାଉଥାଏ । କଥାବାର୍ତ୍ତାରେ ଏମିତି ମୁଁ କହୁଥିଲି ଯେ ଭାରତୀୟ ଦର୍ଶନରେ ଆତ୍ମା ଅବିନଶ୍ୱର, ଚିରନ୍ତନ, ଦେହ ତୁଚ୍ଛ, ଅଳୀକ ସେଇ ଆତ୍ମାହିଁ କେବଳ ଏକ ସତ୍ୟ ତା ଭିନ୍ନ ଜୀବନର ଆଉ ଯେତେ ଉପଭୋଗ, ବିଳାସ ସବୁ ମିଥ୍ୟା ପ୍ରବଞ୍ଚନ ।

ତମେ ହଠାତ ପଚାରିଲ, କିଛିଟା ଜର୍ଜର ଓ କଠୋର ତୁମର ସ୍ୱର, ଦେହ ବ୍ୟତିରେକ ଆତ୍ମାର ସ୍ଥିତି ଯେଉଁଠି, ତା'ର ଅର୍ଥ ବି କ'ଣ ଯଦି ଦେହ ନଥାଏ ?" ମୁଁ ନିରୁତ୍ତର ରହିଲି । ତୁମ ପ୍ରଶ୍ନର ଉତ୍ତର ମୁଁ ଯେ ଜାଣି ନଥିଲି ତା ନୁହେଁ କିନ୍ତୁ ସେଇ କ୍ଷଣରେ ତମ ଆଖିରେ ଯେଉଁ ବେଦନା ବିଦ୍ଧ ଅବ୍ୟକ୍ତ ଭାବ ଫୁଟି ଉଠିଲା ତାକୁଇ ଦେଖି ନୀରବ ରହିବାକୁ ମୁଁ ଶ୍ରେୟସ୍କର ମଣିଥିଲି ।

ଅର୍ଚ୍ଚନା, ଅଶ୍ରୁ ପୋଛି ନେଲ । ମୋ ଅଲକ୍ଷ୍ୟରେ ମୁହଁ ବୁଲେଇ କେଉଁ ଭାବକୁ ସଂଗୋପନରେ ସାଇତି ରଖିବାକୁ ଚେଷ୍ଟା କରୁଥିଲ ସେଦିନ, ବେଦାଧ୍ୟୟିନୀ ତରୁଣୀ ?

ଦିନେ କି ଦୁଇଦିନ ପରେ ବୋଧହୁଏ, ହରି କି ପଯ୍ୟଣରେ ବସିଥିଲେ । ଗଙ୍ଗାନଦୀର କୂଳରେ ସିମେଣ୍ଟ ମାଟି ଗୋଡ଼ିର ପ୍ରଶସ୍ତ ଦୀର୍ଘ ଚଟାଣ । ମନ୍ଦିରର ଆଳତି ସରିଯାଇଥିଲା । ଗଙ୍ଗାମାତା ମନ୍ଦିରରେ ଆଳତି ସମୟର ସେଇ ଚମତ୍କାର ଦୃଶ୍ୟ .... ଶତସହସ୍ର ଜନତାର ହାତର ପାପୁଲିରୁ ପାଣିକୁ ଓହ୍ଲାଇ ଯା'ନ୍ତି ପତ୍ର ଠୋଲାରେ ଫୁଲ, ପତ୍ର ଆଉ ଜ୍ୱଳନ୍ତ ଦୀପାଳି ସେ ସଂଧ୍ୟାରେ ତଥାପି କେତେ ନା କେତେ ଦେଦୀପ୍ୟମାନ ଦୀପାଳି ଫୁଲ ଓ ପତ୍ର ପାଣି ସୁଅରେ ଭାସି ଭାସି ଯାଉଥାନ୍ତି । ସୁନ୍ଦର ଦୃଶ୍ୟ ! ଆଲୋକିତ ସେଇ ଆଲୋକ ପ୍ରତିବିମ୍ବିତ ଚମତ୍କାର ଗଙ୍ଗା ମାତା ଆଜି ବି ମନେ ପଡ଼େ ! ମନେପଡ଼ ତମେ ।

କଣ୍ଠରେ ରୁଦ୍ରାକ୍ଷମାଳା ଥିଲା, ପିନ୍ଧିଥିଲ ଶ୍ୱେତ ଶୁଭ୍ର ଶାଢ଼ୀ, ସବୁବେଳେ ଯାହା ପିନ୍ଧ । ଅଳ୍ପ ଜନଗହଳି ସେଇ ଅଞ୍ଚଳରେ ପାଣିକୁ ଲାଗି ମୁଁ ବସିଥାଏ, ତମେ ହଠାତ ଉଠିଯାଇ ଆଣ୍ଠୁଏ ପାଣିରେ ଠିଆହେଲ ଏବଂ ଉଚ୍ଚାରଣ କଲ ।

"ଧ୍ରୁବମସି ଧ୍ରୁବାଽହଂ
ପତିକୁଲେ ଭୂୟାସମ୍"

ମୁଁ ସ୍ପଷ୍ଟ ଶୁଣିପାରିଥିଲି, ଉତ୍ତର ଆକାଶରେ ଜକ ଜକ ଧ୍ରୁବ ତାରା ସ୍ପଷ୍ଟ ଉଜ୍ଜଳ ଦେଖା ଯାଉଥିଲା । କିନ୍ତୁ କିଏ ସେଇ ଅଜ୍ଞାତ ତମର ପତିଦେବ ଯାହାଙ୍କ ପ୍ରତି ଉଦ୍ଦେଶ୍ୟ କରି ଧ୍ରୁବ ତାରାକୁ ସାକ୍ଷୀରଖି ତମେ କହିଲ, "ହେ ଧ୍ରୁବ ତାରେ । ଆକାଶରେ ତୁମେ ଯେପରି ଅଚଞ୍ଚଳ ରହିଅଛ ପତି କୁଳରେ ମୁଁ ମଧ୍ୟ ସେହିପରି ଅଚଞ୍ଚଳ ସ୍ଥିର ରହିବି ପରମାତ୍ମାଙ୍କୁ ଏହି ପ୍ରାର୍ଥନା ଜଣାଉଛି" ।

ସେଇ ସଜଳ ଗଂଭୀର ଦୃଶ୍ୟ ସେଦିନ ରହସ୍ୟମୟ ହୋଇ ମୋତେ ଦେଖା ଦେଲା ।

ଅର୍ଚ୍ଚନା, ଆଜି ସ୍ୱୀକାର କରୁଛି ସେଦିନହିଁ କୌଣସି ମନୁଷ୍ୟ ପ୍ରତି ମୋର ସନ୍ଦେହର ସର୍ବପ୍ରଥମ ସ୍ଫୁରଣ ଘଟିଥିଲା ।

× × × ×

Love is not love which alters when alterative find, ମୋର ଏଇ ପଦକ କଥା ତମ ସ୍ୱାମୀଙ୍କୁ ଅକ୍ଷେପ କରି । ସେଇକଥା ପଦକରେ ତମେ କ୍ଷିପ୍ତା ବାଘୁଣୀ ପରି ଗର୍ଜି ଉଠିଲ ତମ ସ୍ୱାମୀଙ୍କୁ ସମର୍ଥନ ଜଣାଇ ।

ମୋର ସ୍ୱାର୍ଥ ଶା ନ ଥିଲା ।

ମୁଁ ତୁମର ଆତ୍ମା କାହାଣୀ ଶୁଣି ବିଚଳିତ ହୋଇ ପଡ଼ିଥିଲି । ତୁମେ କିପରି ଏତେ ଧୈର୍ଯ୍ୟର ସହିତ ମୋର ଅଜ୍ଞାତ ତୁମର ସେ ପ୍ରିୟତମଙ୍କୁ ଅଶ୍ରୁ ଛଳ ଛଳ ନୟନରେ କ୍ଷମାଦେଇ ପାରିଲ······ଆଜି ବି ଭାବିଲେ ମୋ ମସ୍ତକ ଅଜସ୍ର ସମ୍ମାନରେ ସ୍ୱତଃ ଅବନତ ହୋଇ ଆସେ, ତୁମ ପ୍ରତି, ତୁମର ସେ ନିଷ୍ଠଳ ନିର୍ବିକାର ତପସ୍ୱିନୀ ପ୍ରତି । ଅର୍ଚ୍ଚନା ! ମଡ଼େଲିଂ ଆଉ ହିପ୍‌ପୀଜିମର କୁହେଳି ଭିତରେ ବି ତୁମେ ଆତ୍ମାର ସେଇ ମହାବନ୍ଧନ ପ୍ରତି ଏତେ ଅନୁରକ୍ତ ରହି ପାରିଲ ? ବସ୍ତୁବାଦୀ ସୁଖ ଓ ପ୍ରାଚୁର୍ଯ୍ୟ ଭିତରେ ଦେହାସକ୍ତ ଜୀବନରେ ତମ ମାନସ ମଞ୍ଜୁଷା ତଥାପି ବୋଧ ହୁଏ କେଉଁ ଅପାର୍ଥିବ ଲୋକରେ ତାର ପ୍ରିୟତମ ସହିତ ନିତ୍ୟ ଲୀଳାରେ ନିମଗ୍ନା ଥିଲା ।

ନଚେତ ବିବାହର ଦିନ କେଇଟା ପରେ ଯା'ର ସ୍ୱାମୀ ମାତାଲ ଭଳିରେ ଅନ୍ୟ ଶଯ୍ୟାସଙ୍ଗିନୀର ବାହୁ ବନ୍ଧନରେ ରାତି ଯାପନ କଲା ସେ ବା କେମିତି ସେଇ ନିଷ୍ଠୁର ପାଶବ ପୁରୁଷକୁ ଦେବତାର ସମ୍ମାନରେ ଚିରଦିନ ପୂଜା କରି ପାରନ୍ତା ? ଭଲ ପାଇବାର ନିଶ୍ଚିତ ନିରଙ୍କୁଶ ପ୍ରତିଶ୍ରୁତି ଥରେ ଦେଇଥିଲେ ବୋଲି ଚିରଦିନ ସେଇ ପ୍ରତିଶ୍ରୁତିକୁ ହୃଦୟରେ ଧରି ବୁଲିଲ ନା ? ବିବାହର ତିନି ଚାରିମାସ ପୂର୍ବରୁ ତାଙ୍କ ସହିତ ତମର ପ୍ରଥମ ଦେଖା । ସେଇ ପ୍ରଥମ ମିଳନ ବାସରର କେଉଁ ମଧୁମନ୍ଦ ସୌରଭ ତମର ହୃଦୟକୁ ସୁରଭିତ ରଖିଥିଲା ? ପ୍ରଥମ ମିଳନୋତ୍ସବ ଅନିର୍ବାଣ ଦୀପ ପରି ତମର ହୃଦୟକୁ ଆଲୋକିତ କରି ରଖିଥିଲା । ସେଦିନ ମୁଁ ଏଇସବୁହିଁ ଚିନ୍ତି ପାରିଥିଲି !

ବିବାହ ପୂର୍ବରୁ ସବୁଥିଲା ସ୍ୱପ୍ନ ରାଜ୍ୟର ବିଚରଣ ପରି ଚମତ୍କାର, ମୁଗ୍ଧ, ମଧୁର ଅନୁଭୂତି. ସବୁକିଛି ରଙ୍ଗୀନ ସ୍ୱପ୍ନିଳ । ମାତ୍ର ବିବାହ ପରେ ଏମିତି କ'ଣ ହେଲା ? କେଉଁ ଅବିଶ୍ୱାସର କୀଟ ତମ ଦାମ୍ପତ୍ୟ ଜୀବନର ସତେଜ ସଦ୍ୟଫୁଟ । ଗୋଲାପ କଳିକାଟିକୁ ତା'ର ବିଷାକ୍ତ ଦଂଶନରେ ଝାଉଁଳେଇ ପକାଇଲା ! ତମେ ହୁଏତ କେଉଁଠି କେବେ ଭୁଲ କିଛି କରି ବସିଥିଲ, ଆଉ ସେଇଥି ପାଇଁ ସାରାଜୀବନ ତା'ର ପ୍ରାୟଶ୍ଚିତ୍ତ କରିବ ବୋଲି ଶପଥ ବଦ୍ଧ ରହିଲ ।

ସେଦିନ କହିଥିଲ ଅର୍ଚ୍ଚନା ପ୍ରଥମ ମିଳନ ରାତିରେ ତମ ସ୍ୱାମୀ ତମକୁ କହିଥିଲେ, ଦେହର ମିଳନ କ୍ଷଣିକ ସତ୍ୟ ମାତ୍ର ଦେହକୁ ସମ୍ବଳ କରି ତା'ର ଅନ୍ତରାଳରେ ଯେଉଁ ଆତ୍ମାର ମିଳନ, ହୃଦୟର ମିଳନ ସଂଘଟିତ ହୁଏ ତାହା -ଚିରନ୍ତନ । ତମେ ମୁଁ ଜନ୍ମ ଜନ୍ମାନ୍ତର ବ୍ୟାପୀ ପରସ୍ପର ମମତାବନ୍ଧ ପ୍ରଣୟୀ ଯୁଗଳ; ଏକଥା କେବେ ଭୁଲିବ ନାହିଁ । ଜାଣେନା, ତମର ସ୍ୱାମୀ ଏକଥା ମନେ ରଖିଥିଲେ କି ନାହିଁ କିନ୍ତୁ ମୁଁ ନିଶ୍ଚିତ ଭାବେ ଜାଣେ-କେବଳ ସେଇ ଶବ୍ଦାନୁରଣନକୁ ମନେରଖି ଜୀବନ ସାର୍ଥକ କରିବା ପାଇଁ ତମେ ନିରନ୍ତର କୃଚ୍ଛ୍ର ସାଧନାରେ ନିମଗ୍ନା ଥିଲ ।

ଅର୍ଚ୍ଚନା !

ସେଇଥିପାଇଁ ସେଦିନ ଶହ ଶହ ବର୍ଷ ତଳର ଆର୍ଯ୍ୟାବର୍ତ୍ତର ସେଇ ମହର୍ଷିମାନଙ୍କ ବାଣୀ ମନେ ପକାଇ ମନ୍ଦଗମ୍ଭୀର କଣ୍ଠରେ ଗାଇ ଉଠିଲି ।

ସମଞ୍ଜନ୍ତୁ ବିଶ୍ୱେଦେବାଃ ସମାପୋ ହୃଦୟାନି ନୌ
ସଂମାତରିଶ୍ୱା ସଂଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ ।

ଆମ ଦୁହିଁଙ୍କର ମିତ୍ରତାକୁ ସମସ୍ତେ ଉତ୍ତମ ରୂପେ ଜାଣନ୍ତୁ । ଜଳ ଯେପରି ଗୋଟିଏ ସମତଳରେ ରହେ, ଆମ ଉଭୟଙ୍କ ହୃଦୟର ଭାବ ସମାନ ରହୁ । ଜଣଙ୍କର ଦୁଃଖରେ ଅନ୍ୟ ଜଣକ ଦୁଃଖୀ, ଜଣଙ୍କର ସୁଖରେ ଅନ୍ୟ ଜଣକ ସୁଖୀ ହେଉ । ପ୍ରାଣବାୟୁ ପରି ଆମେ ପରସ୍ପରର ପ୍ରିୟ ହେବୁ ଏବଂ ପରସ୍ପର ପ୍ରତି ଚିରଦିନ ଆକୃଷ୍ଟ ହୋଇ ରହିବୁ ।

ଅର୍ଚ୍ଚନା ! ତମ ଆଖିରେ ଅଶ୍ରୁ ସେଇ ପ୍ରଥମ ନୁହେଁ, ତଥାପି ସେଇ ଅଶ୍ରୁ ବିନ୍ଦୁ ମୋତେ ସେଦିନ ଆଲୋକ ବିନ୍ଦୁ ପରି ଦେଖାଗଲା । ଦୂରରୁ କେଉଁ ଦୂରାନ୍ତରୁ ତା'ର ଜ୍ୟୋତି ଆଜି ବି ଦେଖାଯାଏ । ଅନନ୍ତ କାଳରୁ ସେଇ ଆଲୋକ ପ୍ରଜ୍ଜ୍ୱଳିତ ହୋଇ ରହିଛି ଏ ଭୂମିରେ ।

× × ×

ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା, ଯେତେବେଳେ ତମେ କହିଲ ଯେ ତମେ ହିନ୍ଦୁ ଘରେ ଜନ୍ମ ନେଇ ନାହିଁ, ଆଉ ମଧ୍ୟ ତୁମର ହିନ୍ଦୁ ସ୍ୱାମୀ କେବେ ତୁମକୁ ହିନ୍ଦୁଧର୍ମ ଗ୍ରହଣ କରିବାକୁ ପ୍ରବର୍ତ୍ତାଇ ନାହାନ୍ତି ।

ଥିଲା କିଛିଟା ବିସ୍ମୟ, ଏକ ଶିଶୁର ବିସ୍ମୟ । ଯେତେବେଳେ ହଟହ୍ୱାର ଗ୍ରୁଡ଼ ଅଫିସ ଓ ପ୍ଲାଟଫର୍ମରେ ଠିଆ ହୋଇ ହାତ ହଲେଇ ତମେ ଅନ୍ୟମାନଙ୍କ ସହିତ ମୋତେ ବିଦାୟ ଦେଲ ସେତିକିବେଳେ, ତମେ ଅଦୃଶ୍ୟ ହେବାପରେ ସବୁ ଲୁଚି ଯାଇ ଦେଖା ଦେଇଥିଲା କ୍ଷୁଦ୍ର ଏକ ମରୁନଦୀର ଶୁଷ୍କ ବାଲୁକା ପ୍ରାନ୍ତରରେ ଆତ୍ମ ବିସର୍ଜନର ଦୃଶ୍ୟ ନିଜକୁ ସମର୍ପଣ କରି ଅନ୍ୟ ଏକ ମଙ୍ଗଳମୟ ବିଶ୍ୱ ସୃଷ୍ଟି କରିବାର କ୍ଷୀଣ ଅଥଚ ସ୍ପଷ୍ଟ ପ୍ରତିଜ୍ଞା ।

ଶୁଭୁଥିଲା ରହି ରହି ଗମ୍ଭୀର ବେଦଧ୍ୱନି । ●

# ଆଚାର୍ଯ୍ୟ ହରିହରଙ୍କ ସହିତ କେତୋଟି ମୁହୂର୍ତ୍ତ

**ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ**
ସଂପାଦକ, ଆଚାର୍ଯ୍ୟ ହରିହର ଏଡୁକେସନ ସୋସାଇଟି

ଆଚାର୍ଯ୍ୟ ମହାଶୟ ଏପରି ଏକ ବ୍ୟକ୍ତିତ୍ୱ ଯାହାଙ୍କ ବିଷୟରେ ଆଲୋଚନା କରିବା ସହଜ ସାଧ୍ୟ ନୁହେଁ, ସାଧାରଣ ମଣିଷ ହୋଇ ଜନ୍ମ ହୋଇଥିଲେ ମଧ୍ୟ ତାଙ୍କର କର୍ମ ଓ ଆଚରଣ ଏପରି ଅସାଧାରଣ ଥିଲା ଯେ ତାହା ତାଙ୍କୁ ମାନବିକତାରୁ ଦେବତା ପର୍ଯ୍ୟାୟରେ ପହଞ୍ଚାଇ ପାରିଥିଲା । ମାନବ ସେବା ଥିଲା ତାଙ୍କ ଜୀବନର ପ୍ରଧାନ କର୍ମ । ପତ୍ନୀ ବିଚ୍ଛେଦ ଓ ଦୁଃଖ ଦାରିଦ୍ର୍ୟତା ଆଦି ବହୁ ବାଧାବିଘ୍ନ ଜୀବନକାଳରେ ଭୋଗି ଯାଇଥିଲେ ମଧ୍ୟ ତାଙ୍କ ଧୈର୍ଯ୍ୟ ଓ କର୍ତ୍ତବ୍ୟପରାୟଣତା ତାଙ୍କୁ ଅଟଳ ରଖିଥିଲା । ତାଙ୍କ କର୍ମଜୀବନ ନୈତିକତା ଓ ଧାର୍ମିକତା ଉପରେ ପ୍ରତିଷ୍ଠିତ ଥିଲା । ଗୀତାକୁ ସାର୍ବଜନୀନ କରିବା ନିମନ୍ତେ ସେ ତାକୁ କେବଳ ସରଳ ଭାଷାରେ ଲେଖିଥିଲେ ତାହା ନୁହେଁ ନିଜର ଜୀବନକୁ ସାର୍ଥକ କରିବା ପାଇଁ ଗୀତାକୁ ଆୟୁଧ ରୂପେ ବ୍ୟବହାର କରିଥିଲେ । ସେ ଥିଲେ ଜଣେ ସ୍ଥିତପ୍ରଜ୍ଞ । ରାଗ ଓ ଅହଙ୍କାର ତାଙ୍କ ହୃଦୟକୁ ସ୍ପର୍ଶ କରି ନଥିଲା । ତାଙ୍କ ବିନମ୍ର ବ୍ୟବହାର ଆଗରେ ସମସ୍ତେ ନତମସ୍ତକ ହେଉଥିଲେ । ଭାରତୀୟ ଜାତୀୟ ଆନ୍ଦୋଳନରେ ସେ ଜଣେ ମୁଖ୍ୟ ପରିଚାଳକ ଥିଲେ ମଧ୍ୟ ସ୍ୱାଧୀନତା ପରବର୍ତ୍ତୀ କାଳରେ କ୍ଷମତାର ରାଜନୀତିଠାରୁ ବହୁ ଦୂରରେ ରହି ରାଜନୀତିରୁ ଅବ୍ୟାହତି ନେଇଥିଲେ । ନିଜର ପ୍ରତିଷ୍ଠା ପାଇଁ ସେତେବେଳେ ଅନୁକୂଳ ପରିବେଶ ଥାଇ ନିଜର ପ୍ରତିଷ୍ଠାକୁ ପଛରେ ପକାଇ 'ଭଲମଣିଷ' ଗଢ଼ି ତୋଳିବା ପାଇଁ ସେ ଯୁବ ସଂପ୍ରଦାୟଙ୍କୁ ପ୍ରବର୍ତ୍ତାଇ ଥିଲେ । ତାଙ୍କ ପରି ତ୍ୟାଗୀ ସମାଜସେବୀ ମାନବ ଇତିହାସରେ ଖୁବ୍ ବିରଳ । କୌଣସି ଅନ୍ୟାୟ ଦେଖିଲେ ସ୍ଥିର ଚିତ୍ତରେ ଗମ୍ଭୀର ରହୁଥିଲେ । ସ୍ୱାଧୀନତାର ପରବର୍ତ୍ତୀ କାଳରେ କ୍ଷମତା ପାଇଁ ଯେଉଁ ଦଳାଚକଟା ଚାଲିଲା ସେତେବେଳେକୁ ଈଶ୍ୱର ତାଙ୍କର ଦୃଷ୍ଟିଶକ୍ତିକୁ ଫେରାଇ ନେଇଥିଲେ ।

ଏପରି ଏକ ମହାମାନବଙ୍କ ସଂସ୍ପର୍ଶରେ ଆସିଥିବାରୁ ମୁଁ ଆଜି ନିଜକୁ ପରମ ସୌଭାଗ୍ୟ ମନେ କରେ । କିନ୍ତୁ ସଂସ୍ପର୍ଶର ବେଳଥିଲା ମୋ ପାଇଁ ଅବେଳ । ବାଲ୍ୟକାଳ ଚପଳମତି ଶିଶୁ ମୁଁ । ସ୍କୁଲ ଛୁଟିପରେ ବଡଭାଇଙ୍କ ସଙ୍ଗେ ଘରପାଖ ପାଠାଗାର (ପୁରୀ ହେଡ୍‌ପୋଷ୍ଟଅଫିସ ସାମ୍ନାସ୍ଥ "ଗୋପବନ୍ଧୁ ଭବନ"ରେ ଗାନ୍ଧୀଶାନ୍ତି ପ୍ରତିଷ୍ଠାନ ତରଫରୁ ଖୋଲା ଯାଇଥିବା ପାଠାଗାର) କୁ ଯାଉଥିଲି । ଏପରି ଅନେକଦିନ ପରେ ଥରେ ସଂନ୍ଧ୍ୟାରେ ପ୍ରାର୍ଥନାସଭାର ଆୟୋଜନ ହେଲା । ପାଠାଗାରକୁ ଲାଗି ଅନ୍ୟ ଏକ କୋଠରୀରେ ଦୁଇଜଣ ଦାଢ଼ିଆ ବୃଦ୍ଧଲୋକ ରହୁଥିଲେ । ଜଣେ ଥିଲେ ପଣ୍ଡିତ କୃପାସିନ୍ଧୁ ହୋତା ଓ ଅନ୍ୟଜଣକ ଆଚାର୍ଯ୍ୟ ମହାଶୟ । ଦୁଇଜଣଯାକ ପ୍ରାର୍ଥନା ସଭାରେ ବସିଥାନ୍ତି । ପ୍ରାର୍ଥନା ଶେଷରେ ସମସ୍ତେ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ । ମୁଁ ପିଲା ହୋଇଥିବାରୁ ମୋତେ ସମସ୍ତେ ଆଗକୁ ଛାଡ଼ିଦେଲେ । ମୁଁ ମୁଣ୍ଡିଆ ମାରିଲାବେଳେ ଏକ କୋମଳ ଥରଥର ହାତ ମୋ ମୁଣ୍ଡରେ ପିଠିରେ ବୁଲି ଆସୁଥାଏ । ଥଙ୍ଗ ଥଙ୍ଗ କଣ୍ଠରେ ଆଚାର୍ଯ୍ୟ ମହାଶୟ କହିଲେ କିଏ ? ଖୁବ ମିଠାକଥା । ଶରତଭାଇ କହିଲେ ପ୍ରଫୁଲ୍ଲ । ପଞ୍ଚମଶ୍ରେଣୀରେ ପଢ଼ୁଛନ୍ତି । ସେଥିରୁ ସେ ମୋର ବୟସ ଅନୁମାନ କରି ପାରିଥିଲେ । କହିଲେ- "ନାତି ! ଛେଳି ଦାଢ଼ି ସଙ୍ଗେ ଖେଳିବୁ ।" ସେଠାରେ ସେ ସଂନ୍ଧ୍ୟାରେ ଏକ ହାସ୍ୟରୋଳ ସୃଷ୍ଟି କରିଥିଲେ । ଗୋପବନ୍ଧୁ ଭବନ ଏପରି ଏକ ପରିବେଶ ସୃଷ୍ଟି କରିଥିଲା ଯାହା ଭ୍ରାତୃଭାବ, ସୁଶୃଙ୍ଖଳ ହେବାପାଇଁ ବହୁ ଖାଦ୍ୟ ଯୋଗାଇଥିଲା । ମୁଁ ନିଜ ପରିବାର ସହିତ ସେହି ପରିବାର ସହ ଆକୃଷ୍ଟ ହୋଇଥିଲି । ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ପୁରୀ ଗୋପବନ୍ଧୁ ଭବନରେ ଏକ "ବନ୍ଧୁମଣ୍ଡଳ" ଗଠନ କରା ଯାଇଥିଲା । ଯହିଁରେ ବହୁ ଯୁବକ ନେତୃତ୍ୱ ନେଇଥିଲେ ।

ସର୍ବଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ରଥ, ଦୀନବନ୍ଧୁ ମିଶ୍ର, ପ୍ରସନ୍ନ କୁମାର ଦାଶ, ବିଜୟ ସିହ୍ନା, ପ୍ରଶାନ୍ତ ସିହ୍ନା, ନୀଳକଣ୍ଠ ଭଇନା ଆଦି ଅନେକ ଯୁବକ, ମୁଁ ଥିଲି କନିଷ୍ଠତମ ସଭ୍ୟ। ବନ୍ଧୁମଣ୍ଡଳ ତରଫରୁ ସମସ୍ତଙ୍କ ଭିତରେ ଭ୍ରାତୃଭାବ ସୃଷ୍ଟି କରି ଭେଦଭାବ ନିରାକରଣ, ବସ୍ତି ସଫେଇ, ପଦଯାତ୍ରା, ଫସଲ ଆଦି କରି ବନ୍ୟାପୀଡ଼ିତଙ୍କୁ ସାହାଯ୍ୟ କରିବା ଆଦି କାର୍ଯ୍ୟ ହେଉଥିଲା। ଆଚାର୍ଯ୍ୟ ମହାଶୟଙ୍କ ଅସୁସ୍ଥତା ଏବଂ କର୍ମକର୍ତ୍ତାମାନେ ଉଚ୍ଚ ଅଧ୍ୟୟନ ପାଇଁ ପୁରୀ ଛାଡ଼ି ବାହାରୁ ପଳାଇଗଲେ ସେଥିପାଇଁ "ବନ୍ଧୁମଣ୍ଡଳ" କାର୍ଯ୍ୟରେ ଶିଥିଳତା ଦେଖା ଦେଲା। ଆଚାର୍ଯ୍ୟ ମହାଶୟ ପିଲାଙ୍କ ସଙ୍ଗେ ପିଲା, ବୃଦ୍ଧଙ୍କ ସହ ବୃଦ୍ଧ, ଯୁବକମାନଙ୍କ ସହ ଯୁବକ ହୋଇ ମିଶିପାରୁ ଥିଲେ। ବାବାଜି ମା' ଠାରୁ ଆରମ୍ଭ କରି ଶ୍ରୀ ବିଶ୍ୱନାଥ ଦାସ (ତତ୍କାଳୀନ ଉତ୍ତର ପ୍ରଦେଶର ରାଜ୍ୟପାଳ) ସମସ୍ତେ ସମାନ ଥିଲେ। କଥାର ପ୍ରସଙ୍ଗ ଭିନ୍ନ ଥିଲା। ସେ ବ୍ୟକ୍ତି ପୂଜାକୁ ନାପସନ୍ଦ କରି ପ୍ରତିଭା ପୂଜା ଉପରେ ଜୋର ଦେଉଥିଲେ।

୧୯୭୯ ମସିହା ଫେବୃୟାରୀ ୨୯ ତାରିଖ ଦିନ ହଠାତ୍ ଶୁଣିବାକୁ ପାଇଲୁ ଆଚାର୍ଯ୍ୟ ମହାଶୟ ଇହଲୀଳା ତ୍ୟାଗ କଲେ। ମୁଁ ଅଶ୍ରୁପୂର୍ଣ୍ଣ ନୟନରେ ଦୌଡ଼ି ଯାଇଥିଲି ଗୋପବନ୍ଧୁ ଭବନ। ସେଠାରେ ତ ଆଚାର୍ଯ୍ୟ ମହାଶୟ ନଥାନ୍ତି। ଖବର ମିଳିଲା ଦିନ ୨ଘଟିକାରେ ସମୟରେ ଶବଧାର ଆସି ସେଠାରେ ପହଞ୍ଚିବ। ଆମେ ଅନାଇ ରହିଥାଉ। ସୂଚନାବିଭାଗ ତରଫରୁ ପ୍ରଚାର ହେଉଥାଏ। ରାମଧୂନ ଚାଲିଥାଏ। ଗୋପବନ୍ଧୁ ଭବନରେ ପ୍ରାର୍ଥନା ସଭା ହେଉଥାଏ। ଶବଧାର ଆସି ପହଞ୍ଚିଲା, ବାବାଜି ମା କାନ୍ଦି କରି ଗଡ଼ି ଯାଉଥାଏ ସମସ୍ତଙ୍କ ଆଖିରେ ଲୁହ। ସିଂହଦ୍ୱାର ଦେଇ ଶବଧାର ଚାଲିଲା। ଭୂଦାନକର୍ମୀ, ସମାଜ ସେବକ ବାହିନୀ, ନେତୃବର୍ଗ, ଛାତ୍ରଛାତ୍ରୀ ସମସ୍ତଙ୍କ ମେଳରେ ଅସ୍ତଗାମୀ ସୂର୍ଯ୍ୟ, ପ୍ରଶାନ୍ତ ମହୋଦଧି କୋଳରେ ଆଚାର୍ଯ୍ୟ ମହାଶୟ ଶୋଇଗଲେ ଅମୃତସ୍ୟ ପୁତ୍ର ହୋଇ ମୋ ମନରେ ଗୋଟିଏ କଥା--"ନ ଖୋଜି ପାଇଥିଲି, ଖୋଜିଲି ବେଳକୁ ତୁମକୁ ହଜାଇ ବସିଲି।"

●

# ଆଚାର୍ଯ୍ୟ ସ୍ମରଣେ

ରାଗ—ଚୋଖୀ

**ଶ୍ରୀ ବାଉରି ବନ୍ଧୁ ଦାଶ**

ହେ ଆଚାର୍ଯ୍ୟ ହରିହର ! ଉତ୍କଳ-ତପି-ପ୍ରବର
ସତ୍ୟବ୍ରତୀ, ସତ୍ୟବାଦୀ ପୀଠ ସାଧକ,
ସ୍ୱାଧୀନତା ରଣ ବୀର ବହି ଦୁଃଖ କାରାଗାର
ହେଲ ଜାତି, ନୀତି, ତ୍ୟାଗ-ପ୍ରୀତି ଶିକ୍ଷକ
ତୁମ ପରି ସାତ୍ତ୍ୱିକ ଜନ,
ଲଭି ଉତ୍କଳର ନବ-ଭାଗ୍ୟ ରଚନ ।
ପୂର୍ବ ପଞ୍ଚ ସଖା ଭଳି ଜ୍ଞାନ ସାଧନ ବିସ୍ତାରି,
ନବ ପଞ୍ଚ ସଖା ମଧ୍ୟେ ଆଦର୍ଶ ପ୍ରାଣ
ଗୋପବନ୍ଧୁ କର୍ଣ୍ଣଧାର ନୀଳକଣ୍ଠ ବାଗ୍ମୀବର,
ଗୋଦାବରୀଶ ଉତ୍କଳ ଉନ୍ନତି-କାମ୍ୟ,
କୃପାସିନ୍ଧୁ ନୀରବ କର୍ମୀ,
ପ୍ରଚାରିଲେ ଅନନ୍ତ ସେ ଉତ୍କଳ ଭୂମି ।
ସତ୍ୟବାଦୀ ମହାପୀଠ ଲୋକ ସେବାରେ ଗରିଷ୍ଠ
ଆଦର୍ଶ ସେ ବିଦ୍ୟାଳୟ ଥିଲା ଉତ୍କଳେ,
କେତେ ସେ ଶିକ୍ଷା ଲଭିଲେ ଜ୍ଞାନ ବିଦ୍ୟା ପ୍ରସାରିଲେ
ଚେତନା ପାଇଲା ଜାତି ତାହାର ବଳେ,
ସେହି ପୀଠ ଚିର ଅମର,
ସେ ପୀଠର ସ୍ମୃତି ଶିଖା ତୁମେ ଦେଶର ।
ବିନୋବା ଭୂଦାନ ଯଜ୍ଞ, ଶ୍ରମଦାନ ମହାଯଜ୍ଞ,
ଏଥିର ଅଭିଜ୍ଞ ଯୋଗ୍ୟ ରଥୀ ଆପଣ,
ଗୀତା କରି ଅନୁବାଦ ରଚି ଅନେକ ପ୍ରବନ୍ଧ
ନୀତି, ନିୟମ, ସଂଯମ, ବେଦାଧ୍ୟୟନ ।
କରି, କଲ ଆଶ୍ରମ ଧର୍ମ,
ଭକ୍ତ ପୂତ ହେଲେ ଏହି ଉତ୍କଳ ଜନ ।
ତୁମେ ଧୀର, ତୁମେ ବୀର ତ୍ୟାଗୀ ପୁଣ୍ୟ ଜନନୀର
ଚିର ବରେଣ୍ୟ, ଜାତିର କୁଳଶେଖର,
ରାଜଧାନୀ ପୀଠ ପର ସ୍ମୃତି ଆଚାର୍ଯ୍ୟ ବିହାର
ସ୍ମୃତି ତୁମ ତଳେ, ତୁମେ ରହ ଉପର;
ତୁମ ନାମେ ଏ ମହା ବିଦ୍ୟାଳୟ,
ଖାରବେଳ ନଗରରେ ହେଲା ଉଦୟ ।

